Store Middle School Series

# ଭାରତ ଇତିହାସ

(୨ୟ ଫାର୍ମ ନିମନ୍ତେ)

ଶ୍ରୀ କାଳିଆ ପାଣିଗ୍ରାହୀ, ବି. ଏ., ଏଲ୍.ଟି ଓ ଶ୍ରୀ କୁଳମଣି ମିଶ୍ର,
ବି. ଏ. ଏଲ୍.ଟି ଙ୍କ ପ୍ରଣୀତ

# History of India

## Form II

BY

**Kalia Panigrahy, B. A., L. T**

**Kulamani Misra, B. A., L. T.**

ଦ୍ୱିତୀୟ ସଂସ୍କରଣ

*PUBLISHED BY*

**The Students' Store,**

BERHAMPUR.

1931.



ମୂଲ୍ୟ ବାରଅଣା ମାତ୍ର — Price As. 12

# ସୂଚୀ

ବିଷୟ | ପୃଷ୍ଠାଙ୍କ

# ଭାରତ ଇତିହାସ

( ଦ୍ୱିତୀୟ ଫାରମ୍ ନିମନ୍ତେ )

—:—

## ଭାରତ ଓ ତାହାର ଗଠନ

ଭାରତକୁ ତିନ ଭାଗରେ ବିଭକ୍ତ କରାଯାଇ ପାରେ । ଭାରତର ମୁକୁଟ ତୁଲ୍ୟ ହିମାଳୟ ପର୍ବତ ଉତ୍ତର ଦିଗରେ ଶୋଭା ପାଉଅଛି । ଏହି ପର୍ବତ ଶ୍ରେଣୀ ପଶ୍ଚିମରୁ ପୂର୍ବ ଆଡ଼େ ବିସ୍ତୃତ । ପୃଥିବୀର ସବୁ ପର୍ବତ ଠାରୁ ହିମାଳୟ ଅଧିକ ଉଚ୍ଚ । ଗୌରୀଶଙ୍କର ନାମରେ ଏହାର ଗୋଟିଏ ଅତ୍ୟୁଚ୍ଚ ଶୃଙ୍ଗ ଅଛି । ପ୍ରାଚୀର ତୁଲ୍ୟ ଠିଆ ରହି ହିମାଳୟ ଭାରତକୁ ରକ୍ଷା କରେ ।

ଭାରତର ବାୟୁବ୍ୟ କୋଣରେ ଅଫଗାନସ୍ଥାନ ନାମରେ ଗୋଟିଏ ପାହାଡ଼ିଆ ଦେଶ ଅଛି । ଏହି ଦେଶ ଓ ଭାରତ ମଧ୍ୟରେ ହିନ୍ଦୁକୁଶ୍ ଓ ସୁଲେମାନ ବୋଲି ଦୁଇଗୋଟି ପର୍ବତ ଦେଖାଯାଏ । ଏ ଦୁଇ ପର୍ବତର ସ୍ଥାନେ ସ୍ଥାନେ କେତେ ଗୋଟି ପଥ ବା ଗିରିସଙ୍କଟ ଅଛି । ସେଗୁଡ଼ିକ ମଧ୍ୟରୁ ଖାଇବର୍ ଓ ବୋଲନ୍ ଅତି ପ୍ରଧାନ । ପୂର୍ବକାଳରେ ବିଦେଶୀ ଶତ୍ରୁମାନେ ଏହି ଦୁଇ ଗିରିସଙ୍କଟ ବାଟେ ଆମ ଦେଶ ଭିତରକୁ ଆସୁଥାନ୍ତି । ସେହି ସମୟରେ କେବଳ ଏହି ଦୁଇ ଗିରିସଙ୍କଟ ବାଟେ ଇଉରୋପ ସହିତ ଆମ ଦେଶର ବାଣିଜ୍ୟ ଚଳୁଥାଏ ।

ହିମାଳୟର ନିମ୍ନ ଭାଗରେ ଝାଡ଼ ଅରଣ୍ୟ, ଏଠାରେ ନାନା ରକମ ଜନ୍ତୁ ଓ ବୃକ୍ଷ ଦେଖାଯାଏ । ପର୍ବତର ଉପରଭାଗ ସବୁବେଳେ ବରଫରେ ଆବୃତ । ବରଫ ଯୋଗୁଁ ପର୍ବତ ଉପରେ ଗଛ ପତ୍ର ବେଶି ରହେ ନାହିଁ । ଖରା ଲାଗିବା ମାତ୍ରେ ବରଫ ତରଳିଯାଇ ଜଳ ଆକାରରେ ତଳକୁ ଖସି ଆସେ । ଏଣୁ ଖରାଦିନେ ଗଙ୍ଗା ପ୍ରଭୃତି ହିମାଳୟଜାତ ନଦୀରେ ବହୁତ ପାଣି ଆସେ । ହିମାଳୟରୁ ଗଙ୍ଗା, ବ୍ରହ୍ମପୁତ୍ର ଓ ସିନ୍ଧୁ ନଦୀମାନ ଜାତ ହୋଇ ଉତ୍ତର ଭାରତରେ ବହିଯାଏ । ଏଗୁଡ଼ିକର ଅନେକ ଶାଖା ପ୍ରଶାଖା ଅଛି ।

ହିମାଳୟ ପର୍ବତକୁ ଭାରତର ପ୍ରଥମ ବିଭାଗ କହାଯାଇ ପାରେ । ଦ୍ୱିତୀୟ ବିଭାଗ ହେଉଛି, ସିନ୍ଧୁ-ଗଙ୍ଗା-ସମତଳ ପ୍ରଦେଶ । ଏହି ପ୍ରଦେଶକୁ ଉତ୍ତର ଭାରତ, ହିନ୍ଦୁସ୍ଥାନ ବା ଆର୍ଯ୍ୟାବର୍ତ୍ତ କହନ୍ତି । ଏହି ଦୁଇ ନଦୀରେ ସର୍ବଦା ଜଳ ରହିବାରୁ, ଏ ପ୍ରଦେଶଟି ବଡ଼ ଫଳବନ୍ତ । ଏହି ଦୁଇ ନଦୀରେ ନୌକା ଓ ଜାହାଜ ଚଳାଇବାର ସୁବିଧା ହୁଏ; ଜାହାଜ ଯାଆସ କରୁଥିବାରୁ ଏ ପ୍ରଦେଶରେ ଭାରି ବେପାର ହୁଏ । ଯେଉଁ ସ୍ଥାନରେ ଯଥେଷ୍ଟ ଜଳ, ଖାଦ୍ୟ ଦ୍ରବ୍ୟାଦି ଥାଏ ଏବଂ ବାଣିଜ୍ୟ ବିସ୍ତର ଚଳେ, ସେଠାର ଲୋକସଂଖ୍ୟା ଅଧିକ ହେବା ସ୍ୱାଭାବିକ । ବହୁ ଲୋକ ବାସ କରିବା ପ୍ରଦେଶରେ ବଡ଼ ବଡ଼ ସହରମାନ ଥାଏ । ଏଣୁ ଆର୍ଯ୍ୟାବର୍ତ୍ତରେ ବଡ଼ ସହର ଅନେକ ଦେଖାଯାଏ ।

ଆର୍ଯ୍ୟାବର୍ତ୍ତର ଦକ୍ଷିଣରେ ବିନ୍ଧ୍ୟପର୍ବତ । ବିନ୍ଧ୍ୟଗିରିର ନିମ୍ନଭାଗରେ ନର୍ମଦା ନଦୀ ପଶ୍ଚିମ ଦିଗରେ ବହି ଯାଏ । ନର୍ମଦା ଦକ୍ଷିଣରେ ସାତପୁରା ପର୍ବତ । ଏହି ପର୍ବତ ତଳେ ତାପ୍ତି ନଈ । ଏହି ଦୁଇ ପର୍ବତ ଓ ନଦୀ ପାଖାପାଖିରେ ରହି ଭାରତର କଟି ଭଳି ଦେଖାଯାନ୍ତି । ଏହା

ଆର୍ଯ୍ୟାବର୍ତ୍ତର ଦକ୍ଷିଣସୀମା ଏବଂ ଦାକ୍ଷିଣାତ୍ୟର ଆରମ୍ଭ । ହିନ୍ଦୁସ୍ଥାନରେ କେହି ପୂର୍ବମୁଖ ହୋଇ ଯିବାବେଳେ, ଏହି ପ୍ରଦେଶ ତାହାର ଦକ୍ଷିଣ ହାତ ଆଡ଼େ ରହେ; ଏଣୁ ଏହାର ନାମ 'ଦକ୍ଷିଣାପଥ' ବା 'ଦାକ୍ଷିଣାତ୍ୟ' । ଦାକ୍ଷିଣାତ୍ୟ ଗୋଟିଏ ଉଚ୍ଚଭୂମି । ଗୋଦାବରୀ ଓ କୃଷ୍ଣା ନଦୀ ଏ ପ୍ରଦେଶରେ ପ୍ରବାହିତ ।

କୃଷ୍ଣାର ଦକ୍ଷିଣରେ ଯେଉଁ ପ୍ରଦେଶ ଅଛି ତାହା କୃଷ୍ଣା ଠାରୁ ସମୁଦ୍ରର ଯାଏ ବିସ୍ତୃତ । ଉତ୍ତରରୁ ଦକ୍ଷିଣ ଆଡ଼େ ଏହି ପ୍ରଦେଶ କ୍ରମେ ସଙ୍କୀର୍ଣ୍ଣ ହୋଇ କୁମାରିକା ଅନ୍ତରୀପ ଠାରେ ଶେଷ ହୋଇଅଛି । ଏଠାର ପ୍ରଧାନ ନଦୀ କାବେରୀ । ଦାକ୍ଷିଣାତ୍ୟକୁ ଭାରତର ତୃତୀୟ ବିଭାଗ ବୋଲିଯାଇ ପାରେ ।

ଦାକ୍ଷିଣାତ୍ୟର ସୁଦୂର ଦକ୍ଷିଣରେ ସମୁଦ୍ର— ପୂର୍ବ ଓ ପଶ୍ଚିମରେ ବି ସମୁଦ୍ର । ତାହାର ପୂର୍ବରେ ବଙ୍ଗୋପସାଗର ପଶ୍ଚିମରେ ଆରବ ସାଗର । ଏହି ଦୁଇ ସମୁଦ୍ର ଭାରତର ବେଶି ଉପକାର କରୁଥାଏ । କାରଣ, ଏଠାରୁହିଁ ଜଳ ବାଷ୍ପାକାରରେ ଉଠି ପୁନର୍ବାର ଜଳ ଆକାରରେ ଭୂମିରେ ପଡ଼େ । ଆରବ ସାଗର ଆଡୁଁ ଯେଉଁ ଜଳକଣା ପବନରେ ଉଡ଼ି ଆସେ, ତାହା ପଶ୍ଚିମଘାଟ ପର୍ବତ ଦେହରେ ଲାଗେ । ଏହି ପର୍ବତ ଦାକ୍ଷିଣାତ୍ୟର ପଶ୍ଚିମ ଉପକୂଳ ପ୍ରଦେଶରେ କାନ୍ଥ ପରି ଠିଆ ହୋଇଅଛି । ବାଷ୍ପ ଜଳ ହୋଇ ଏହି ପର୍ବତରେ ଆସି ବାଜିବା ମାତ୍ରେ, ଅଧିକ ବର୍ଷା ଯୋଗୁଁ ବହୁତ ଜଳ ନଦୀରେ ବହି ଆସେ । ଏଣୁ ପଶ୍ଚିମ ଘାଟରେ ବୃଷ୍ଟି ହେଲେ ଗୋଦାବରୀ, କୃଷ୍ଣା ଓ କାବେରୀରେ ଜଳ ବଢ଼ି ଯାଏ । ପୂର୍ବ ତୀରରେ ମଧ୍ୟ ଗୋଟିଏ ପର୍ବତ ଶ୍ରେଣୀ ଅଛି । ଏହା ପଶ୍ଚିମଘାଟ ଭଳି ତେତେ ଉଚ୍ଚ ନୁହେ । ପୂର୍ବ ଘାଟରେ ଅନେକ

ମାର୍ଗ ଥିବାରୁ, ନଦୀ ସବୁ ମେ ବାଟେ ବହି ବଙ୍ଗୋପସାଗରରେ ଯାଇ ମିଶେ ।

ଆମ ଦେଶ ପ୍ରାଚୀନକାଳରୁ ଫଳବତୀ ବୋଲି ପ୍ରସିଦ୍ଧ । କାରଣ, ଏହି ଦେଶରେ ଅନେକ ବଡ଼ ବଡ଼ ନଦୀ ବହେ ଏବଂ ନଦୀଗୁଡ଼ିକରେ ସର୍ବଦା ଜଳ ରହେ । ଯଥେଷ୍ଟ ସୂର୍ଯ୍ୟତାପ ଓ ସାମୟିକ ବୃଷ୍ଟି ଯୋଗୁଁ ମଧ୍ୟ ଭାରତ ଖୁବ୍ ଉର୍ବର । ଫସଲ ଭଲ ହେବାରୁ ଆମ ଦେଶରେ ସୁଖରେ ଜୀବନ କଟାଇବାର ଭାରି ସୁବିଧା ଘଟେ । ଏହି କାରଣରୁହିଁ ବିଦେଶୀ ଶତ୍ରୁମାନେ ପୂର୍ବକାଳରେ ବାରମ୍ବାର ଭାରତ ଆକ୍ରମଣ କରି ଯାଉଥାନ୍ତି । ଏହା ଛଡ଼ା, ଭାରତରେ ବିବିଧ ବନଜାତ ପଦାର୍ଥର ମଧ୍ୟ ଅଭାବ ନାହିଁ । ଭାରତର ବହୁ ସ୍ଥଳରେ ଖଣିରୁ ସୁନା, ରୁପା, ଲୁହା, କୋଇଲା ଇତ୍ୟାଦି ଜିନିସ ବାହାରେ । ମହୀଶୂର ଦେଶର ଖଣିରୁ ଯଥେଷ୍ଟ ସୁନା ବାହାର କରାଯାଏ ।

ପୂର୍ବକାଳରୁ ଆଜ ଯାଏଁ ବିଭିନ୍ନ ଜାତି ଓ ଅନେକ ରାଜା ଆମ ଦେଶରେ ରାଜତ୍ୱ କରି ଆସୁଛନ୍ତି । ବର୍ତ୍ତମାନ ସମଗ୍ର ଭାରତବର୍ଷ ଇଂରେଜ ସରକାର ଅଧୀନରେ । ସଡ଼କ, ରେଲମାର୍ଗ, ଡାକଘର, ତାର ପ୍ରଭୃତି ଉପାୟରେ ଭାରତର ସକଳ ସ୍ଥାନ ପରସ୍ପର ସହିତ ଘନିଷ୍ଠ ଭାବରେ ସଂବଦ୍ଧ । ଆମ୍ଭେମାନେ ସମସ୍ତେ ଗୋଟିଏ ରାଜା ବା ସରକାରଙ୍କ ପ୍ରଜା ।

---

## ଭାରତର ଆଦିମ ନିବାସୀ ଓ ଦ୍ରାବିଡ଼ ଜାତି

ଠିକ୍ କେଉଁ ସମୟ ଠାରୁ ମନୁଷ୍ୟ ପୃଥିବୀରେ ଦେଖା ଦେଇଛି, ତାହା କହି ହୁଏ ନାହିଁ । ତେବେ ପୂର୍ବେ ସେ ଯେପରି ଥିଲା, ଏବେ ସେପରି ନାହିଁ—ଆକୃତି ପ୍ରକୃତି, ରୀତି ନୀତିରେ ବହୁ ପରିବର୍ତ୍ତନ

ଚାହିଁଛନ୍ତି । ଦଶହଜାର ବର୍ଷ ପୂର୍ବେ ଯେଉଁ ମନୁଷ୍ୟମାନେ ଥିଲେ, ସେମାନଙ୍କ ଅବସ୍ଥା କିପରି ଅନୁମାନ କରାଯାଇ ପାରିବ ? ସେମାନେ କିଛି ପୁସ୍ତକ ଲେଖି ଯାଇଛନ୍ତି, ନା କୌଣସି ଚିତ୍ର ଆଙ୍କିଛନ୍ତି ? ନା, ଏପରି କିଛି କରିନାହାନ୍ତି । ତେବେ କେଉଁ ଚିହ୍ନ ଧରି ସେମାନଙ୍କ ଅବସ୍ଥା ବୁଝି ହେବ ? ସେମାନେ ଏହି ଜଗତରୁ ଲୋପ ପାଇଛନ୍ତି ସତ୍ୟ, କିନ୍ତୁ ସେମାନଙ୍କର କେତେ ଗୋଟି ସ୍ମୃତି-ଚିହ୍ନ ଅବଲମ୍ବନରେ ସେ ସମୟର ରୀତି ନୀତି, ଅସ୍ତ୍ରର ବ୍ୟବହାର ଇତ୍ୟାଦି ଅନୁମାନ କରାଯାଇ ପାରେ । ସେମାନଙ୍କ ତିଆରି ପଥର ଅସ୍ତ୍ର ଶସ୍ତ୍ର, ମାଟିହାଣ୍ଡି ଇତ୍ୟାଦି ବର୍ତ୍ତମାନ ସ୍ଥାନେ ସ୍ଥାନେ ଦେଖିବାକୁ ମିଳେ । ଏହା ଛଡ଼ା ସେମାନଙ୍କର କୌଣସି ଚିହ୍ନ ନାହିଁ ।

ପୃଥିବୀର ସବୁ ସ୍ଥାନର ଆଦିମବାସୀଙ୍କ ପରି, ଭାରତର ଆଦିମବାସୀମାନେ ମଧ୍ୟ ଆଗେ ବଡ଼ ଅସଭ୍ୟ ଥିଲେ । ଆଦିମଯୁଗରେ ମନୁଷ୍ୟ ଓ ପଶୁ ମଧ୍ୟରେ ବିଶେଷ କିଛି ପ୍ରଭେଦ ନ ଥିଲା । ଦେଶ ବନ ଜଙ୍ଗଲରେ ପୂର୍ଣ୍ଣଥିଲା । ପଶୁ ପକ୍ଷୀ ମାରି ମନୁଷ୍ୟମାନେ ଖାଉଥାନ୍ତି । ସେମାନେ ଅଗ୍ନିର ବ୍ୟବହାର ବୁଝି ନ ଥିବାରୁ, ଖାଲି କଞ୍ଚା ମାଂସ ଆହାର କରୁଥିଲେ । ସେମାନଙ୍କର ଲଜ୍ଜା-ବୋଧ କିଛି ନ ଥିଲା । ଏଣୁ ସେମାନେ ଅନ୍ୟାନ୍ୟ ଜନ୍ତୁଙ୍କ ପରି ସବୁବେଳେ ଲଙ୍ଗଳା ହୋଇ ବୁଲ ଚାଲ କରୁଥାନ୍ତି । ଘର ତିଆରି କରିବାର ସେମାନଙ୍କୁ ଆଦୌ ଜଣା ନ ଥିଲା, ଏଣୁ ସେମାନେ ବୃକ୍ଷ ମୂଳରେ କିମ୍ବା ଗୁହା ମଧ୍ୟରେ ଦିନରାତି କଟାଉଥାନ୍ତି ।

ସେମାନେ ପଥରରେ ଅସ୍ତ୍ର ଶସ୍ତ୍ର ପ୍ରସ୍ତୁତ କରିବା ମାତ୍ର ଜାଣିଥିଲେ । ଆଗେ ଆଗେ ଏହା ବି ଭଲ କରିପାରୁ ନ ଥିଲେ, କିନ୍ତୁ ଆସ୍ତେ ଆସ୍ତେ ଉତ୍କୃଷ୍ଟ ଧରଣର ଅସ୍ତ୍ର ଶସ୍ତ୍ର ତିଆରି କରିବାର ଶିଖିଲେ । ଏଣୁ

ସେଥିଦ୍ୱାରା ଜନ୍ତୁ ମାରିବାର ସୁବିଧା ହେଲା । କେହି ମରିଗଲେ, ତାହାର ଶବ ପୋଡ଼ା ବା ପୋତା ହେଉ ନ ଥାଏ, ଜନ୍ତୁ ବନ୍ୟ ଜନ୍ତୁମାନଙ୍କର ଆହାର ହେଉଥାଏ; ନ ହେଲେ ପଚି ସଢ଼ି ମାଟିରେ ମିଶି ଯାଉଥାଏ । ମାତ୍ର କିଛି କାଳ ପରେ ଜ୍ଞାନ ଓ ସଭ୍ୟତାର ବୃଦ୍ଧି ସଙ୍ଗେ ସଙ୍ଗେ ସେମାନେ ଅଗ୍ନିର ବ୍ୟବହାର ବୁଝିଲେ । କ୍ରମେ ସେମାନେ ଅଗ୍ନି ସାହାଯ୍ୟରେ ରନ୍ଧନାଦି କଲେ ଏବଂ ମୃତ୍ତିକାରେ ପାତ୍ର ସବୁ ତିଆରି କରିବାର ଶିଖିଲେ । ବଡ଼ ବଡ଼ ମାଟି ହାଣ୍ଡିରେ ମଡ଼ାକୁ ବନ୍ଦ କରି



ହାଣ୍ଡି ତଳେ ପୋତି ରଖୁଥାନ୍ତି । ଏପରି କେତେ ଗୋଟି ହାଣ୍ଡି ବର୍ତ୍ତମାନ ସ୍ଥାନେ ସ୍ଥାନେ ଖୋଳା ଯାଇଛି । ଏପରି କେତେକ ପ୍ରମାଣ ପାଇ ଐତିହାସିକ ପଣ୍ଡିତମାନେ ଭାରତର ଆଦିମବାସିଙ୍କର ପୂର୍ବ ଅବସ୍ଥା ବୁଝି ନେଇଛନ୍ତି । ଅଗ୍ନି-ବ୍ୟବହାର-ଜ୍ଞାନ ଜନ୍ମିବାରୁ ଆଦିମବାସିମାନେ ଅସ୍ତ୍ର ଶସ୍ତ୍ର ସବୁ ପଥରରେ ନ କରି ଲୁହାରେ ତିଆରି କରିବାକୁ ଲାଗିଲେ ।

ଏପରି କ୍ରମେ ଆଦିମ ମନୁଷ୍ୟମାନଙ୍କର ଜ୍ଞାନ ବୃଦ୍ଧି ପାଇବାକୁ ଲାଗିଲା । ଆଜିକାଲି ମଧ୍ୟ ଆମ ଦେଶର କେତେସ୍ଥଳରେ ଅସଭ୍ୟ ଲୋକ ଦେଖା ଯାନ୍ତି । ମାନ୍ଦ୍ରାଜ ପ୍ରଦେଶର ମାଲାବାର ଓ ନୀଲଗିରି ଅଞ୍ଚଳରେ ଯେଉଁ ପାହାଡ଼ିଆ ଲୋକେ ବାସ କରନ୍ତି, ସେମାନେ ନିତାନ୍ତ ଅସଭ୍ୟ । ଏମାନେ ଲେଖାପଢ଼ା ମୋଟେ ଜାଣନ୍ତି ନାହିଁ । ଗଛ ପତ୍ର ବା ଛାଲରେ ଦେହ ଢାଙ୍କି ରଖନ୍ତି । ଛୋଟନାଗପୁର ଓ ଓଡ଼ିଶାର ସାନ୍ତାଳମାନେ ମଧ୍ୟ ଅସଭ୍ୟ ଅବସ୍ଥାରେ ଅଛନ୍ତି । ଏମାନେ ଛୋଟ ଓ କଳା, ଏମାନଙ୍କର ନାକ ଚେପ୍ଟା । କିନ୍ତୁ ଏମାନେ ଖୁବ୍ ବଳିଷ୍ଠ ।

ଏହି ଅସଭ୍ୟ ଆଦିମବାସିମାନେ ଥିଲାବେଳେ ଅନ୍ୟ ଏକ ନୂତନ ଜାତି ଭାରତରେ ଆସି ବାସ କଲେ । ଏହି ଜାତିର ନାମହିଁ ଦ୍ରାବିଡ଼ । କେତେ ଲୋକ କହନ୍ତି ଯେ, ଏମାନେ ଭାରତର ଉତ୍ତର-ପଶ୍ଚିମ କୋଣ ଆଡ଼ୁ ଆସିଥିଲେ । ଏମାନେ ଆଗେ ପାରସ୍ୟ ଦେଶରୁ ବେଲୁଚିସ୍ଥାନକୁ ଆସି, ପରେ ଭାରତର ନାନା ସ୍ଥାନରେ ରହିଲେ ।

ଦ୍ରାବିଡ଼ମାନେ ଆଦିମବାସିଙ୍କ ଅପେକ୍ଷା ଅନେକ ପରିମାଣରେ ଉତ୍କୃଷ୍ଟତର ଓ ଉନ୍ନତତର । ଏଣୁ ଏମାନେ ଆସିବା ପରେ ଆମ ଦେଶର ବହୁ ପରିବର୍ତ୍ତନ ଘଟିଲା । ଦ୍ରାବିଡ଼ ଜାତିର ବଂଶଧରମାନେ ଏବେ ମଧ୍ୟ

ଭାରତରେ ଅଛନ୍ତି । ତେଲଙ୍ଗା, ତାମିଲ ଓ କାନାଡ଼ାଭାଷୀ ସକଳ ଲୋକେ ଏ ଜାତିର ବଂଶଧର । ଏହି ତିନି ଭାଷା ଓ ଜାତିର ଉତ୍ପତ୍ତି ହେଉଛି ଦ୍ରାବିଡ଼ ଭାଷା ଓ ଦ୍ରାବିଡ଼ ଜାତି ।

ପଲ୍ଲୀ ଓ ସହରରେ ଘର-ଢୋଲ ଗଢ଼ିବା ଦ୍ରାବିଡ଼ ଜାତିକୁ ଜଣା ଥିଲା । ସେମାନେ ଜଙ୍ଗଲ କାଟି ଜମି କରି ସେଥିରେ ଫସଲ ଅଦାୟ କରୁଥାନ୍ତି । ସେମାନଙ୍କ ମଧ୍ୟରେ ରାଜାମାନେ ଥିଲେ । ସେମାନେ ସକଳ ଧାତୁର ବ୍ୟବହାର ବେଶ୍ ବୁଝି ଥିଲେ । ସେମାନଙ୍କ ସ୍ତ୍ରୀମାନେ ଅଲଙ୍କାର ବ୍ୟବହାର କରୁଥିଲେ । ରନ୍ଧନାଦି କାମ ସେମାନଙ୍କୁ ସୁନ୍ଦର ଜଣା ଥିଲା । ସେମାନେ ଲୁଗା ପଟା ପିନ୍ଧୁ ଥିଲେ ଏବଂ ଧାତୁରେ ନାନା ରକମ ଅସ୍ତ୍ର ଶସ୍ତ୍ର ତିଆରି କରି ଯୁଦ୍ଧ ଚଳାଉଥିଲେ । ସମୁଦ୍ରତୀର ନଦୀ ବା କୂଳରେ ଥିବା ଲୋକେ ଜାହାଜ ନିର୍ମାଣ କରି ଯାତାୟତ ଓ ବାଣିଜ୍ୟ କରୁଥିଲେ । ଅନ୍ୟାନ୍ୟ ଦେଶରୁ ବଣିକମାନେ ଆସି ଦ୍ରାବିଡ଼ମାନଙ୍କ ସଙ୍ଗେ ବାଣିଜ୍ୟ କରୁଥିଲେ । ସୁନା, ମୁକ୍ତା, ପୋହଲା ଇତ୍ୟାଦି ବହୁ-ମୂଲ୍ୟ ପଦାର୍ଥରେ ମଧ୍ୟ ବୈଦେଶିକମାନଙ୍କ ସଙ୍ଗେ କାରବାର ଚଳୁଥିଲା ।

ଦ୍ରାବିଡ଼ ଜାତିର ଗୋଟିଏ ଭାଷା ପ୍ରଚଳିତ ଥିଲା । ସେମାନେ ପ୍ରଥମରେ ଏକ ଠାରୁ ଛଅ ପର୍ଯ୍ୟନ୍ତ ଗଣିବାର ବୁଝିଥିଲେ । ସେମାନଙ୍କ ମଧ୍ୟରେ ବ୍ରାହ୍ମଣ, ଶୂଦ୍ର ଇତ୍ୟାଦି କୌଣସି ଜାତିଭେଦ ନ ଥିଲା ।

—:o:—

## ଆର୍ଯ୍ୟ ଜାତି

ଆର୍ଯ୍ୟମାନେ ଦ୍ରାବିଡ଼ମାନଙ୍କ ଠାରୁ ଅନେକ ବିଷୟରେ ଭିନ୍ନ । ଆର୍ଯ୍ୟ ଜାତି ଗୌରବର୍ଣ୍ଣ, ଉଚ୍ଚ ଓ ବଳିଷ୍ଠ । ଏମାନଙ୍କ ନାକ ଡେଙ୍ଗା

ନୁହେ, କିନ୍ତୁ ଖଣ୍ଡାଧାର ସଦୃଶ; ଏବଂ ଏମାନଙ୍କ ରୀତି ନୀତି, ଆଚାର ବ୍ୟବହାର ଦ୍ରାବିଡ଼ମାନଙ୍କ ଅପେକ୍ଷା ଅଧିକ ଉନ୍ନତ, ମାର୍ଜିତ ଓ ସୁରୁଚି-ସମ୍ପନ୍ନ ।

ଆଧୁନିକ ଯୁଗରେ ବିବିଧ ଜାତି ଦେଖାଯାନ୍ତି; କିନ୍ତୁ ଅତି ପ୍ରାଚୀନ କାଳରେ ଏତେ ଜାତି ନ ଥିଲେ । ସେତେବେଳେ କେବଳ ଚାରି ଜାତି ଥିଲେ— ସେହି ଚାରି ଜାତିରୁ ଅଧୁନାତନ ବିଭିନ୍ନ ଶ୍ରେଣୀର ଉତ୍ପତ୍ତି । ସେହି ପ୍ରାଚୀନ ଚାରି ମହାଜାତିର ନାମ -- ଆର୍ଯ୍ୟ, ମାଙ୍ଗୋଲ୍, ସେମିଟିକ୍ ଓ ହେମିଟିକ୍ । ମୂଳ ଆର୍ଯ୍ୟ ଜାତିରୁ ଭିନ୍ନ ଭିନ୍ନ ଶାଖା ବାହାରିଛି ।

ଏହି ଆର୍ଯ୍ୟ ଜାତି ସର୍ବ ପ୍ରଥମରେ କେଉଁ ଦେଶରେ ବାସ କରୁଥିଲେ, ତାହା ନିଃସନ୍ଦେହରେ କହି ଯାଇ ନ ପାରେ । କେହି କେହି ଅନୁମାନ କରନ୍ତି ଯେ, ଉତ୍ତର ମେରୁ ପ୍ରାନ୍ତ ଦେଶ ଆର୍ଯ୍ୟ ଜାତିର ଆଦିମ ନିବାସ ସ୍ଥାନ ଏବଂ ସେଠାରୁ ସେମାନେ ଜଗତର ନାନା ଦେଶରେ ଯାଇ ବସତି ସ୍ଥାପନ କଲେ । ଅନ୍ୟାନ୍ୟ ଇତିହାସ-ପଣ୍ଡିତଙ୍କ ମତରେ, ଆର୍ଯ୍ୟମାନେ ଆଗେ ମଧ୍ୟଏସିଆରେ ଥିଲେ । ମଧ୍ୟଏସିଆ ଅର୍ଥାତ୍ କାସ୍ପିଅନ୍ ସାଗର ପଶ୍ଚିମବର୍ତ୍ତୀ ପ୍ରଦେଶ ଆର୍ଯ୍ୟ ଜାତିର ପ୍ରଥମ ନିବାସ ସ୍ଥାନ ହେଉ କିମ୍ବା ନ ହେଉ, ସେମାନେ ସେଠାରେ ବହୁକାଳ ରହିଥିବା କଥା ସତ୍ୟ ।

ଆର୍ଯ୍ୟଜାତି ଦୁଇ ଶାଖାରେ ବିଭକ୍ତହୋଇ ଦୁଇ ଦିଗରେ ଗଲେ । ଦଳେ ପଶ୍ଚିମାଭିମୁଖରେ ଯାଇ କ୍ରମେ ସମଗ୍ର ଇଉରୋପ ଭୂଖଣ୍ଡ ଅଧି-କାର କରି ନେଲେ । ଅନ୍ୟ ଶାଖାଟି ପୂର୍ବାଭିମୁଖରେ ଯାତ୍ରାରମ୍ଭ କଲେ । ଏମାନଙ୍କ ମଧ୍ୟରୁ କେତେକ ଜଣ ପାରସ୍ୟ ଦେଶରେ ରହିଲେ ଏବଂ ଅବଶିଷ୍ଟ ଅଫଗାନିସ୍ଥାନ ବାଟେ (ଖାଇବାର ଗିରିସଙ୍କଟରେ ପ୍ରବେଶ

କର) ଆମ ଦେଶକୁ ଆସିଲେ । ଏହା ଆଜକୁ ପ୍ରାୟ ଛ ହଜାର ବର୍ଷ ତଳର କଥା ।

ଆର୍ଯ୍ୟମାନଙ୍କର ଉଚ୍ଚ ଧରଣର ଏକ ଭାଷା ଥିଲା ତାହା 'ପ୍ରାକୃତ' । ସାଧାରଣ କଥା ବାର୍ତ୍ତାରେ ଏହି ଭାଷା ବ୍ୟବହୃତ ହେଉଥିଲା । କିନ୍ତୁ ଶାସ୍ତ୍ର-ସାହିତ୍ୟଚର୍ଚ୍ଚା, ଗ୍ରନ୍ଥରଚନା, ଧର୍ମାଲୋଚନା ଇତ୍ୟାଦିରେ ଏକ ରକମ ମାର୍ଜ୍ଜିତ ଭାଷାର ବ୍ୟବହାର ଥିଲା । ଏହି ଭାଷାର କ୍ରମେ ସଂସ୍କାର କରି ଯାଇ ଥିବାରୁ ଏହାର ନାମ ହେଲା 'ସଂସ୍କୃତ' । ଏହା ଆର୍ଯ୍ୟଜାତିର ଭାଷା । ଏହି ମୂଳଭାଷାରୁ କାଳକ୍ରମେ ବହୁ ଶାଖା ଉପଶାଖା ଜାତ ହୋଇଅଛି । ଓଡ଼ିଆ, ବଙ୍ଗଳା, ହିନ୍ଦି ପ୍ରଭୃତି କେତେକ ଭାଷା ସଂସ୍କୃତ ଭାଷାର ଗୋଟିଏ ଗୋଟିଏ ଶାଖା ମାତ୍ର । ସଂସ୍କୃତ ଭାଷାର ପ୍ରଭାବରେ ଦ୍ରାବିଡ଼ମାନଙ୍କ ଭାଷା ମଧ୍ୟ କେତେଦୂର ବଦଳିଛି । ତେଲୁଗୁ ଓ କାନାଡ଼ା ଭାଷାରେ ଅନେକ କେତୋଟି ସଂସ୍କୃତ ଶବ୍ଦ ମିଶିଛି ।

ବେଦ ଆର୍ଯ୍ୟଜାତିର ପ୍ରଧାନ ଧର୍ମଗ୍ରନ୍ଥ । ବେଦରୁ ହିଁ ପ୍ରାଚୀନ ଆର୍ଯ୍ୟମାନଙ୍କର ଇତିହାସ ଧରାଯାଏ । ଜଗତରେ ବେଦ ହିଁ ପ୍ରାଚୀନତମ ଗ୍ରନ୍ଥ । ଏଣୁ କେହି କେହି କହିଥାନ୍ତି ଯେ, ତାହା ବ୍ରହ୍ମାଙ୍କ ମୁଖରୁ ନିଃସୃତ । କିନ୍ତୁ ପ୍ରକୃତରେ ଏହି ପ୍ରକାଣ୍ଡ ଗ୍ରନ୍ଥ ଆର୍ଯ୍ୟଋଷିମାନଙ୍କଦ୍ୱାରା ଲିଖିତ । 'ବେଦର' ଅର୍ଥ 'ଜ୍ଞାନ' ।

ବେଦ ୪ଭାଗରେ ବିଭକ୍ତ । ପ୍ରଥମ ଭାଗର ନାମ 'ଋଗ୍‌ବେଦ' । 'ଋକ୍' ବୋଇଲେ ମନ୍ତ୍ର । ଅନେକ ମନ୍ତ୍ରରେ ପୂର୍ଣ୍ଣ ଥିବାରୁ ଏହି ଭାଗର ନାମ ରଖାଗଲା ଋଗ୍‌ବେଦ । ଏହା ଅନ୍ୟାନ୍ୟ ଭାଗ ଅପେକ୍ଷା ଅତି ପ୍ରାଚୀନ । ଦ୍ୱିତୀୟଟି 'ସାମବେଦ'; ତୃତୀୟ 'ଯଜୁର୍ବେଦ' ଓ ଚତୁର୍ଥ

'ଅଥର୍ବବେଦ' । ପ୍ରତ୍ୟେକ ବେଦର ପ୍ରଧାନ ଅଂଶକୁ ସଂହିତା ବୋଲି-ଯାଏ । ଏହା ମନ୍ତ୍ର ସ୍ତବସ୍ତୁତି ଇତ୍ୟାଦିରେ ପୂର୍ଣ୍ଣ । ସଂହିତା ଛଡ଼ା ବେଦର ଅନ୍ୟ କେତୋଟି ବିଭାଗ ଅଛି—ବ୍ରାହ୍ମଣ, ଉପନିଷଦ୍ ଓ ଆରଣ୍ୟକ । ସାମବେଦ ଓ ଯଜୁର୍ବେଦରେ ବିଶେଷ କିଛି ନୂତନ କଥା ନାହିଁ—ଋଗ୍‌ବେଦର କେତେକାଂଶ ଏଥିରେ ସନ୍ନିବିଷ୍ଟ ହୋଇଅଛି । ଋଗ୍‌ବେଦ ହିଁ ସର୍ବପ୍ରଧାନ, ଏହା ଦଶଖଣ୍ଡରେ ବିଭକ୍ତ । ଦଶଖଣ୍ଡରେ ୧୦୨୮ ଗୋଟି ଋକ୍ (ମନ୍ତ୍ର) ଦେଖାଯାଏ ।

ଆର୍ଯ୍ୟମାନେ ପ୍ରକୃତିକୁ ଈଶ୍ୱର ଜ୍ଞାନ କରି ପୂଜା କରୁଥିଲେ । ସୂର୍ଯ୍ୟ, ଚନ୍ଦ୍ର ପ୍ରଭୃତି ତେଜୋମୟ ପଦାର୍ଥ—ଜଳ, ଅଗ୍ନି, ବାୟୁ ପ୍ରଭୃତି ପଞ୍ଚମହାଭୂତକୁ ସେମାନେ ଦେବତା ବୋଲି ମାନୁଥିଲେ । ଋଗବେଦରେ ଏମାନଙ୍କର ସ୍ତବସ୍ତୁତି ବେଶି ଦେଖାଯାଏ । ବର୍ଷା ଲୋଡ଼ା ହେଲେ ଇନ୍ଦ୍ରଙ୍କୁ, ଧନ ସମ୍ପଦ ଦରକାର ହେଲେ ବରୁଣଙ୍କୁ ଧ୍ୟାନ କରୁଥାନ୍ତି । ଉଷା ଅର୍ଥାତ୍ ପ୍ରାତଃକାଳ ମଧ୍ୟ ଆର୍ଯ୍ୟମାନଙ୍କର ଜଣେ ଆରାଧ୍ୟ ଦେବୀ ଥିଲେ । ଏପରି ପ୍ରକୃତି-ପୂଜା ସଙ୍ଗେ ସଙ୍ଗେ ଆର୍ଯ୍ୟଜାତିର ଗମ୍ଭୀର ଦାର୍ଶନିକ ଜ୍ଞାନ ବି ଉଦିତ ହେଲା । ସେମାନେ ଭଗବାନଙ୍କ ଅନନ୍ତ-ସୃଷ୍ଟି ଓ ଲୀଳାକୁ ଲକ୍ଷ୍ୟ କରି ଅନେକ ସ୍ତୁତି ଜଣାଣ କରୁଥିଲେ । ଏହି ସକଳ ସ୍ତବସ୍ତୁତି ଋଗ୍‌ବେଦରେ ଦେଖାଯାଏ ।

ବେଦ ପାଠ କଲେ ପ୍ରାଚୀନ ଆର୍ଯ୍ୟଜାତିର ସେହି ସମୟର ଅବସ୍ଥା ଓ ସଭ୍ୟତା ବୁଝାଯାଏ । 'ଆର୍ଯ୍ୟ' ଶବ୍ଦର ପ୍ରଥମ ଅର୍ଥ 'କୃଷକ' । ସେମାନେ ଦଳବଦ୍ଧ ହୋଇ ଏକ ସ୍ଥାନରୁ ଅନ୍ୟ ଏକ ସ୍ଥାନକୁ ଯାଉ-ଥିଲେ । ପ୍ରତ୍ୟେକ ଦଳରେ ଅନେକ ପରିବାର ଥାଏ । ପିତା ଏହି ପରିବାରର ସର୍ବାଧିକାରୀ । କେତୋଟି ପରିବାରକୁ ନେଇ ଗୋଟିଏ ଦଳ

ଗଠିତ ହୋଇଥିଲା ଦଳର ଅଧିନାୟକ ହିଁ ରାଜା । ଆର୍ଯ୍ୟମାନେ ସିନ୍ଧୁ-ନଦୀପ୍ରବାହିତ ପ୍ରଦେଶରେ ଆସି ନିବାସ ଆରମ୍ଭ କରିବାବେଳେ, ସେଠାରେ ଦ୍ରାବିଡ଼ଜାତି ଥିଲେ । ଦୁଇ ଜାତି ମଧ୍ୟରେ ଘୋର ବିବାଦ ଗୋଳମାଳ ଉଠିଲା— ଘୋର ଯୁଦ୍ଧ ଘଟିଲା । ଆର୍ଯ୍ୟମାନେ ଘୃଣାରେ ଦ୍ରାବିଡ଼ମାନଙ୍କୁ 'ଅନାର୍ଯ୍ୟ' ବା 'ଦସ୍ୟୁ' ବୋଲି ଡାକୁଥାନ୍ତି । ବଳବୀର୍ଯ୍ୟ ଓ ବୁଦ୍ଧି କୌଶଳରେ ଦ୍ରାବିଡ଼ମାନେ ଆର୍ଯ୍ୟଜାତି ଅପେକ୍ଷା ନିକୃଷ୍ଟ । ଏଣୁ ସେମାନେ ଆର୍ଯ୍ୟମାନଙ୍କଦ୍ୱାରା ପରାସ୍ତ ହୋଇ ପଳାୟନ କଲେ । ଯେଉଁମାନେ ରହିଗଲେ, ସେମାନେ ଆର୍ଯ୍ୟଜାତିର ଦାସତ୍ୱ ସ୍ୱୀକାର କଲେ ।

ଭାରତକୁ ଆସିବା ପୂର୍ବେ ଆର୍ଯ୍ୟମାନଙ୍କର ପ୍ରଧାନ ବୃତ୍ତି ଥିଲା ଗୋ-ମେଷପାଳନ । ଗାଈ ଗୋରୁ ପାଇଁ ଯଥେଷ୍ଟ ଘାସ ଥିବା ସ୍ଥାନରେ ରହି, ସେଠାର ଘାସ ଶେଷ ହେବାକ୍ଷଣି ଅନ୍ୟ ସ୍ଥାନକୁ ଯାଉଥାନ୍ତି । କିନ୍ତୁ ଆମ ଦେଶରେ ପ୍ରବେଶ କରିବା ପରେ ସେମାନଙ୍କ ପକ୍ଷରେ କୃଷି ଅତି ସୁବିଧାଜନକ ହେଲା । ଏଣୁ ଗୋ-ପାଳନ ବୃତ୍ତି କ୍ରମେ ବନ୍ଦ ହୋଇ ସେମାନଙ୍କର କୃଷି ବ୍ୟବସାୟ ବୃଦ୍ଧି ପାଇଲା । ସେମାନେ ଭୂମି ଚାଷ କରି ଫସଲ ଅଦାୟ କରିବାକୁ ଲାଗିଲେ । ଘରେ ସ୍ତ୍ରୀମାନେ ଗହମ ଚୂନା କରି, ରନ୍ଧନ ଇତ୍ୟାଦି କରି ପୁରୁଷମାନଙ୍କୁ ଖାଦ୍ୟ ଯୋଗାଇଲେ ଏବଂ ପୁରୁଷମାନେ ପଦାରେ ପରିଶ୍ରମ କରିବାକୁ ଲାଗିଲେ ।

ଆର୍ଯ୍ୟମାନଙ୍କ ମଧ୍ୟରେ ଯୁଦ୍ଧ ଚଳୁଥିଲା । ଯୁଦ୍ଧରେ ଧନୁ ଓ ଶର ବିଶେଷ ଭାବରେ ବ୍ୟବହୃତ ହେଉଥାଏ । ବର୍ଚ୍ଛା ଓ ଟାଙ୍ଗିର ବି ବ୍ୟବହାର ଥିଲା । ଆର୍ଯ୍ୟମାନେ ରଥରେ ଚଢି ଯୁଦ୍ଧ କରୁଥାନ୍ତି । ଆର୍ଯ୍ୟ-ମାନେ ରଥ ପ୍ରସ୍ତୁତ ପ୍ରଣାଳୀ ସୁନ୍ଦର ଜାଣିଥିଲେ । ସେମାନେ ଯୁଦ୍ଧ

କରିବାବେଳେ ଶରୀର ରକ୍ଷା ପାଇଁ କବଚ ବା ସାଞ୍ଜୁ ଧାରଣ କରୁଥିଲେ ।

କପାରୁ ସୂତା କାଟିବା ସେମାନଙ୍କୁ ଭଲ ଜଣାଥିଲା । ଚମଡ଼ାରେ କଷ ଦେବା ଏବଂ ନାନା ରକମ ଧାତୁରେ ଭିନ୍ନ ଭିନ୍ନ ପଦାର୍ଥ ତିଆରି କରିବା ବି ଜଣାଥିଲା । ସେମାନେ କଂସା ଓ ତମ୍ବାରେ ମଧ୍ୟ ଅସ୍ତ୍ର ଶସ୍ତ୍ର କରୁଥିଲେ । ସେମାନେ ସୁନା ଅଳଙ୍କାର ବ୍ୟବହାର କରୁଥିଲେ ।

ଆର୍ଯ୍ୟମାନେ ପ୍ରାଚୀନ କାଳରୁ ହିଁ ମାଂସାହାରୀ – କେତେକ ଉତ୍ସବ ଓ ପର୍ବରେ ଅର୍ଥାତ୍ ଯଜ୍ଞାଦିରେ ସେମାନେ ପଶୁବଧ କରି ସେହି ମାଂସ ଭକ୍ଷଣ କରୁଥିଲେ । ମାଂସ, ଗହମ ଇତ୍ୟାଦି ସେମାନଙ୍କର ପ୍ରଧାନ ଖାଦ୍ୟ । ସେମାନେ ଘରେ ଗାଈ, ମଇଁଷି ପୋଷି ସେମାନଙ୍କର ଦୁଧ ପିଉଥିଲେ ଏବଂ ସେହି ଦୁଧରୁ ଦହି, ଛେନା, ଲହୁଣି, ଘିଅ ଇତ୍ୟାଦି ବାହାର କରୁଥିଲେ । ସେମାନେ ଘିଅ ଖାଉଥାନ୍ତି ଏବଂ ହୋମରେ ବ୍ୟବହାର କରୁଥାନ୍ତି । କେବେ କେବେ ଯାଗାନୁଷ୍ଠାନରେ ଗୋମାଂସ ଭକ୍ଷଣ କଲେ ହେଁ, ସେମାନେ ଗୋଜାତିକୁ ଖୁବ୍ ଆଦର ଓ ଯତ୍ନରେ ପୋଷି ରଖୁଥିଲେ । ନିଜର ପୁତ୍ର କନ୍ୟା ଓ ପତ୍ନୀ ଭଳି, ଗାଈକୁ ସ୍ନେହ କରୁଥିଲେ । ଆର୍ଯ୍ୟମାନେ 'ସୋମରସ' ନାମକ ଏକପ୍ରକାର ମଦ୍ୟପାନ କରୁଥିଲେ । ଏହି ରସ ଗୋଟିଏ ଲତାରୁ ବାହାର କରାଯାଉଥିଲା । ଏହା ଯଜ୍ଞରେ ଶୁଦ୍ଧ ହେବା ପରେ ପାନ କରାଯାଉଥିଲା ।

ଆର୍ଯ୍ୟମାନେ ଛୋଟ ଛୋଟ ଘର ତିଆରି କରି ରହୁଥିଲେ । ଆଗେ ନଗର ନିର୍ମିତ ହୋଇ ନ ଥିଲା । ପ୍ରଥମରେ ସେମାନେ ସାନ ସାନ ପଲ୍ଲୀରେ ବାସ କରୁଥିଲେ । ସେଠାରେ ଈଶ୍ୱର-ଧ୍ୟାନ କରି ସଦ୍‌ଗ୍ରନ୍ଥ ରଚନା କରୁଥିଲେ । ଉପନିଷଦ୍ ଓ ଆରଣ୍ୟକ ଏହି ଧରଣର ଗ୍ରନ୍ଥ ।

ଆର୍ଯ୍ୟଜାତି ମଧ୍ୟରେ ନାନାବିଧ କ୍ରୀଡ଼ା କୌତୁକର ପ୍ରଚଳନ ଥିଲା । ସେମାନେ ନୃତ୍ୟାଦି କରି ଆନନ୍ଦ ଅନୁଭବ କରୁଥାନ୍ତି । କେତେ ଜଣ ଜୁଆଖେଳ ବଡ଼ ଭଲ ପାଉଥାନ୍ତି । ମାତ୍ର ଜୁଆ ଖେଳର ଅପକାର ବୁଝିଥିଲେ । ଜୁଆ ଖେଳ ଲୋକେ ସର୍ବସ୍ୱାନ୍ତ ବା ବ୍ୟସନ ହୋଇ ପଡ଼ନ୍ତି ବୋଲି ସେମାନେ ବେଶ୍ ବୁଝିଥିଲେ ।

ଋଗ୍‌ବେଦ ସମୟରେ ଆର୍ଯ୍ୟମାନେ ଲେଖିବାର ଜାଣି ନ ଥିଲେ, ଲେଖିବାପାଇଁ ତାଳପତ୍ରର ବ୍ୟବହାର ଜାଣି ନ ଥିଲେ । ଏଣୁ ସେମାନଙ୍କର ବିଦ୍ୟାଧ୍ୟୟନ ଓ ଶାସ୍ତ୍ରଚର୍ଚ୍ଚା କେବଳ ମୌଖିକ ଭାବରେ ଚାଲୁଥିଲା । ଗୁରୁ ମୁଖରୁ ଶାସ୍ତ୍ର ଶୁଣି ଶିଷ୍ୟ ତାହା ମୁଖସ୍ଥ କରୁଥିଲା । ଏପରି ଜଣକଠାରୁ ଆଉ ଜଣେ ଶିଖି ଜ୍ଞାନ ଅର୍ଜନ କରୁଥିଲେ । ଅନେକ ଦିନ ଯାଏଁ ସେମାନେ ଏହି ଭାବରେ ବେଦ ଶିକ୍ଷା କରୁଥିଲେ ।

ଆର୍ଯ୍ୟ ପୁରୁଷ ଓ ସ୍ତ୍ରୀ ଉଭୟେ ବିଦ୍ୟାଧ୍ୟୟନ କରୁଥିବାର ପ୍ରମାଣ ମିଳେ । ସ୍ତ୍ରୀମାନଙ୍କ ମଧ୍ୟରେ ଅନେକ ପଣ୍ଡିତା ଥିଲେ । ସେତେବେଳେ ସ୍ତ୍ରୀ ଜାତିର ବିଶେଷ ଗୌରବ ଥିଲା । କନ୍ୟାର ଉପଯୁକ୍ତ ବୟସ ହେଲେ, ପିତା ତାହାକୁ ଯୋଗ୍ୟ ପାତ୍ରରେ ସମର୍ପଣ କରୁଥିଲେ । ବିବାହ ପରେ ପତିପତ୍ନୀ ସୁଖ ସନ୍ତୋଷରେ କାଳ କଟାଉଥାନ୍ତି । ସେମାନଙ୍କ ସମାଜରେ ବାଲ୍ୟବିବାହ ପ୍ରଥା ନ ଥିଲା ଏବଂ ବିଧବା ବିବାହ ପ୍ରଚଳିତ ଥିଲା ।

ଆର୍ଯ୍ୟମାନେ ଶ୍ରେଷ୍ଠ ନୌକା ତିଆରି କରି ନଦୀ ପାର ହେଉଥାନ୍ତି । ନିରାପଦ ନଦୀଯାତ୍ରା ଉଦ୍ଦେଶ୍ୟରେ ସେମାନେ ବରୁଣ ଦେବତାଙ୍କ ଆରାଧନା କରୁଥାନ୍ତି ।



## ହିନ୍ଦୁସ୍ଥାନରେ ଆର୍ଯ୍ୟନିବାସ

ଆର୍ଯ୍ୟମାନେ ସିନ୍ଧୁନଦୀ ପ୍ରଦେଶରେ ଛୋଟ ଛୋଟ ରାଜ୍ୟ କେତୋଟି ବସାଇ କୃଷି ବ୍ୟବସାୟ ଦ୍ୱାରା ବହୁ କାଳ କଟାଇଲେ । କ୍ରମେ ସେଠାରେ ସେମାନଙ୍କ ସଂଖ୍ୟା ବଢ଼ିବାକୁ ଲାଗିଲା ଏବଂ ରହିବା ନିମନ୍ତେ ସ୍ଥାନର ଅଭାବ ଓ ଖାଦ୍ୟ ଜିନିଷର ଅଭାବ ହେଲା । ଦେଖିଲେ, ସେମାନଙ୍କ ପୂର୍ବ ଦିଗରେ ପ୍ରକାଣ୍ଡ ଉର୍ବର କ୍ଷେତ୍ର ପଡ଼ି ରହିଛି । ଏଣୁ ସେମାନେ ଗଙ୍ଗା-ପ୍ରବାହିତ ପ୍ରଦେଶ ପ୍ରତି କ୍ରମେ ଅଗ୍ରସର ହେଲେ । ଏଠାରେ ବହୁ କାଳ ଆଗରୁ ଦ୍ରାବିଡ଼ ଜାତି ବାସ କରୁଥିଲେ । ଦୁଇ ଜାତି ମଧ୍ୟରେ ଘୋର ଯୁଦ୍ଧ ଘଟିଲା । ଦ୍ରାବିଡ଼ମାନେ ପରାସ୍ତ ହୋଇ ସେଠାରୁ ବିତାଡ଼ିତ ହେଲେ । ଆର୍ଯ୍ୟଜାତି ଏପରି କ୍ରମେ ସିନ୍ଧୁନଦ ଠାରୁ ବ୍ରହ୍ମପୁତ୍ର ପର୍ଯ୍ୟନ୍ତ ଏବଂ ହିମାଳୟଠାରୁ ବିନ୍ଧ୍ୟଗିରି ଯାଏଁ ନିଜ ରାଜ୍ୟ ବିସ୍ତାର କଲେ । ଅନେକ ବଡ଼ ବଡ଼ ରାଜ୍ୟ ବସିଲା । ବହୁ ବୃହତ ନଗର ନିର୍ମିତ ହେଲା । କ୍ଷମତାଶାଳୀ ରାଜାମାନେ ଶାସନ କରିବାକୁ ଲାଗିଲେ ।

ଏହି ବିଶାଳ ପ୍ରଦେଶର ଅଧିବାସୀ ହେବାପରେ ଆର୍ଯ୍ୟଜୀବନରେ କିଛି ପରିବର୍ତ୍ତନ ଘଟିଲା । ପ୍ରଧାନ ପରିବର୍ତ୍ତନ ହେଉଛି — ଜାତିଭେଦର ଆରମ୍ଭ ।

ରାଜ୍ୟ ବିସ୍ତାର ସଙ୍ଗେ ସଙ୍ଗେ ରାଜାମାନଙ୍କ କ୍ଷମତା ଅଧିକ ହେବାକୁ ଲାଗିଲା । ପ୍ରଜାମାନେ ଫଳବତୀ ଭୂମି ଚାଷ କରି ଏବଂ ବାଣିଜ୍ୟ ବ୍ୟବସାୟ ଦ୍ୱାରା ଧନୀ ହୋଇ ଉଠିଲେ । ଅଧିକ କର ପାଇ ରାଜାମାନେ ବି ଅଧିକ ଧନୀ ହେଲେ । ଧନ ଓ କ୍ଷମତା ଲୋଭରେ ନୂତନ ରାଜ୍ୟ ଜୟ କରିବା ଇଚ୍ଛା ବଳବତୀ ହେଲା । ବିଜିତ ରାଜ୍ୟକୁ ଶତ୍ରୁ-ଆକ୍ରମଣରୁ ଉଦ୍ଧାର ପାଇବା ଉପାୟ ଭାବିବାକୁ ପଡ଼ିଲା । ଏଣୁ ରାଜାକୁ ଯୁଦ୍ଧରେ ସାହାଯ୍ୟ କରିବା ପାଇଁ ଅନେକ ଲୋକ ଯୁଦ୍ଧ ବିଦ୍ୟା ଶିଖିଲେ । ଯୁଦ୍ଧହିଁ

ଏମାନଙ୍କର ପ୍ରଧାନ ବ୍ୟବସାୟ ହେଲା । ରାଜାମାନେ ଯୁଦ୍ଧ କରି ଏହି ଯୋଦ୍ଧା ବା କ୍ଷତ୍ରିୟମାନଙ୍କୁ ଅନେକ ଦ୍ରବ୍ୟ ଉପହାର ଦେଉଥାନ୍ତି । ଏପରି କ୍ରମେ ଏହି ଆର୍ଯ୍ୟମାନଙ୍କର ଯୁଦ୍ଧ ଓ ରାଜ୍ୟପାଳନ କୁଳଧର୍ମ ହେବାକୁ ଲାଗିଲା । ଏମାନଙ୍କ ନାମ ରଖାଗଲା କ୍ଷତ୍ରିୟ । କ୍ଷତ୍ରିୟମାନେ ଶତ୍ରୁଆକ୍ରମଣ, ରାଜ୍ୟଜୟ ଓ ରାଜ୍ୟଶାସନରେ ରତ ହେବାରୁ ଅନ୍ୟାନ୍ୟ କାର୍ଯ୍ୟ ସବୁ ଅନ୍ୟାନ୍ୟ ଲୋକଙ୍କୁ କରିବାକୁ ହେଲା ।

•

ସିନ୍ଧୁତୀର ଅପେକ୍ଷା ଗଙ୍ଗା ଓ ଯମୁନା କୂଳରେ ଆର୍ଯ୍ୟମାନେ ଅଧିକ ପରିମାଣରେ ଯଜ୍ଞାନୁଷ୍ଠାନ କରିବାକୁ ଲାଗିଲେ । ଯାଗ-କ୍ରିୟାରେ ଅନେକ ପରିବର୍ତ୍ତନ ଘଟିଲା । ଯାଗ ମନ୍ତ୍ର ଓ ନିୟମର ସଂଖ୍ୟା ଅଧିକ ଜଟିଳ ହୋଇ ପଡ଼ିଲା । ଗୋଟିଏ ଗୋଟିଏ ଯଜ୍ଞର ଗୋଟିଏ ଗୋଟିଏ ନିୟମ ଚଳିଲା । ଯଜ୍ଞଦ୍ୱାରା ଦେବତାମାନେ ପ୍ରୀତ ହୋଇ ମନୁଷ୍ୟର ଅଭୀଷ୍ଟ ପୂର୍ଣ୍ଣ କରନ୍ତି ବୋଲି ଆର୍ଯ୍ୟଜାତିର ପ୍ରଗାଢ଼ ବିଶ୍ୱାସ । କିନ୍ତୁ କ୍ଷତ୍ରିୟମାନେ ଯାଗାନୁଷ୍ଠାନ ପାଇଁ ସମୟ ଓ ସୁବିଧା ପାଇଲେ ନାହିଁ । ଏଣୁ ଏଥିପାଇଁ ଅନ୍ୟ କେତେ ଲୋକ ବାହାରିଲେ । ଏମାନେହିଁ ବ୍ରାହ୍ମଣ । ଯଜ୍ଞାନୁଷ୍ଠାନ ଓ ବେଦାଧ୍ୟୟନ ବ୍ୟତୀତ ଏମାନଙ୍କୁ ଆଉ କିଛି କରିବାକୁ ହେଲା ନାହିଁ ।

•

ଯେତେବେଳେ କ୍ଷତ୍ରିୟ ମାନେ ଯୁଦ୍ଧରେ ଏବଂ ବ୍ରାହ୍ମଣମାନେ ଯାଗରେ ନିଯୁକ୍ତ, ଦେଶର କୃଷିବାସ, ବାଣିଜ୍ୟ ବ୍ୟବସାୟ ଚଳୁଛି କିପରି ? କେବଳ ଯୁଦ୍ଧ ଓ ଯଜ୍ଞ ଦ୍ୱାରା ଖାଇବାକୁ ମିଳିବ କିପରି ? ଏଣୁ ଆଉ

କେତେ ଲୋକ ଭୂମି ଚାଷ କରି ଫସଲ ଅଦାୟ କଲେ, ଏବଂ ବାଣିଜ୍ୟ ଚଳାଇବାକୁ ଲାଗିଲେ । ଏମାନେ ହେଲେ ବୈଶ୍ୟ । ଯେଉଁ ଦ୍ରାବିଡ଼ମାନେ ପରାଜିତ ହୋଇ ଆର୍ଯ୍ୟାବର୍ତ୍ତରେ ଥିଲେ, ସେମାନେ କ୍ଷତ୍ରିୟ, ବ୍ରାହ୍ମଣ ଓ ବୈଶ୍ୟ ଜାତିମାନଙ୍କ ସେବାରେ ଲାଗିଲେ । ଏମାନେହିଁ ଶୂଦ୍ର ।

ଜାତିଭେଦ ବୃତ୍ତି ଉପରେହିଁ ନିର୍ଭର କରେ—ଜନ୍ମ ଉପରେ ନୁହେ । ସେତେବେଳେ ବୃତ୍ତିଭେଦ ଥିଲେହେଁ ଜାତି ଜାତି ମଧ୍ୟରେ ଖାଦ୍ୟ ପେୟ କିମ୍ବା ବିବାହାଦି ସମ୍ବନ୍ଧରେ କୌଣସି ଅପତ୍ତି ହଉ ନ ଥିଲା । କିନ୍ତୁ ଅଧୁନାତନର ଜାତିଭେଦ ପୂର୍ବ କାଳର ଜାତିଭେଦଠାରୁ ଅନେକ ଭିନ୍ନ ।

ଋଗ୍‌ବେଦରୁ ସିନ୍ଧୁତଟବାସୀ ଆର୍ଯ୍ୟମାନଙ୍କ ବିଷୟ ଜଣାଯାଏ । ସେମାନଙ୍କ ଆର୍ଯ୍ୟାବର୍ତ୍ତ ନିବାସ ସମ୍ବନ୍ଧରେ ରାମାୟଣ ଓ ମହାଭାରତରେ ବହୁତ କଥା ଲେଖା ଅଛି । ଅନ୍ୟାନ୍ୟ ପୁରାଣ ସମୂହରୁ ବି ଆର୍ଯ୍ୟ ଜାତିର ତତ୍‌କାଳୀନ ଅବସ୍ଥା ଧରି ଯାଏ ।

ଆର୍ଯ୍ୟାବର୍ତ୍ତରେ କେତୋଟି ରାଜ୍ୟ ଥିଲା । ରାମାୟଣରେ ଏଭଳି କେତୋଟି ରାଜ୍ୟର ନାମ ଦେଖିବାକୁ ପାଉଁ । ରାମଚନ୍ଦ୍ର, ଇକ୍ଷ୍ୱାକୁ ବଂଶର ରାଜା ଥିଲେ । ସେ ଅଯୋଧ୍ୟା ରାଜା ଦଶରଥଙ୍କ ପୁତ୍ର । କୌଶଲ୍ୟା ତାଙ୍କର ମା ।



କୌଶଲ୍ୟାଙ୍କ ପିତା କୋଶଳରାଜ୍ୟର ଅଧିକାରୀ ଥିଲେ । ରାମଚନ୍ଦ୍ର ହରଧନୁ ଭାଙ୍ଗି ସୀତାଙ୍କୁ ବିବାହ କରିଥିଲେ । ସୀତା ମିଥିଳା ରାଜା ଜନକଙ୍କର କନ୍ୟା ।

ରାମଚନ୍ଦ୍ରଙ୍କ ବନବାସ ଚରିତ ଆମ ଦେଶର ପ୍ରାୟ ସମସ୍ତଙ୍କୁ ଜଣା ।

ସେହି ସମୟରେ ଦାକ୍ଷିଣାତ୍ୟ ବଡ଼ ଅସଭ୍ୟ ପ୍ରଦେଶ ଥିଲା । ସେଠାରେ ବେଶି ରାଜ୍ୟ ନ ଥିଲା । ପ୍ରଦେଶଟି ପ୍ରକାଣ୍ଡ ବନରେ ପୂର୍ଣ୍ଣ ଥିଲା । ମାତ୍ର ସ୍ଥାନେ ସ୍ଥାନେ କିଷ୍କିନ୍ଧ୍ୟା ଗୁହକ ଭଳି କେତେଗୋଟି ଛୋଟ ରାଜ୍ୟ ଥିଲା । ଏହି ପ୍ରଦେଶର ରାଜାମାନଙ୍କ ସୈନ୍ୟବଳ ପାଇ ରାମଚନ୍ଦ୍ର ପ୍ରବଳ ପ୍ରତାପୀ ଲଙ୍କା ରାଜା ରାବଣଙ୍କୁ ବଧ କରିଥିଲେ ।

ଆର୍ଯ୍ୟମାନେ ଏପରି କ୍ରମେ ଆର୍ଯ୍ୟାବର୍ତ୍ତରୁ ଦକ୍ଷିଣ ଆଡ଼େ ଯିବାକୁ ଲାଗିଲେ । ଏହାର କେତେକ ଅର୍ଥ୍ୟକର ଉଦ୍ଦେଶ୍ୟ ଥିଲା ଯୁଦ୍ଧ । ଆର୍ଯ୍ୟ ଋଷିମାନେ ତପସ୍ୟା କରିବା ପାଇଁ ଦାକ୍ଷିଣାତ୍ୟର ଅରଣ୍ୟରେ ଆଶ୍ରମ ସ୍ଥାପନ କରି ବହୁ ଶିଷ୍ୟଙ୍କୁ ସଙ୍ଗେ ଧରି ରହିଲେ । ଦୁଷ୍ଟ ଅନାର୍ଯ୍ୟମାନେ ଏ ଋଷିଗଣଙ୍କ ତପସ୍ୟାରେ ବିଘ୍ନ ଘଟାଉଥିଲେ । ଏହି ଉପଦ୍ରବରୁ ରକ୍ଷା ପାଇବା ପାଇଁ ଋଷିମାନେ ଆର୍ଯ୍ୟରାଜା ଓ ଯୋଦ୍ଧାମାନଙ୍କର ଆଶ୍ରୟ ନେଉଥାନ୍ତି । ଋଷିମାନଙ୍କ ପ୍ରଭାବରେ ଦ୍ରାବିଡ଼ମାନଙ୍କର ଅବସ୍ଥା କେତେ ଦୂର ପରିବର୍ତ୍ତିତ ହୋଇଗଲା । ସେମାନେ ବେଦ ଶିଖିଲେ, ଯଜ୍ଞ କଲେ ଏବଂ ଜାତି ବିଭାଗ କରି ଭିନ୍ନ ଭିନ୍ନ ବୃତ୍ତିରେ ଲାଗିଲେ ।

ଆର୍ଯ୍ୟମାନଙ୍କ ମଧ୍ୟରେ ଯୁଦ୍ଧ ବି ଘଟୁଥାଏ । ଏହା ମହାଭାରତରୁ ସ୍ପଷ୍ଟ ଜଣାଯାଏ । ହସ୍ତିନାପୁର ଓ ଇନ୍ଦ୍ରପ୍ରସ୍ଥ ଏ ଦୁଇ ରାଜ୍ୟରେ କୌରବ ଓ ପାଣ୍ଡବମାନେ ରାଜା ହୋଇଥିଲେ । ରାଜା ଧୃତରାଷ୍ଟ୍ରଙ୍କର ପୁତ୍ରମାନେ କୌରବ ଏବଂ ପାଣ୍ଡୁଙ୍କର ପୁତ୍ରମାନେ ପାଣ୍ଡବ । ଏମାନେ ଏକ ବଂଶରୁ ଜନ୍ମିଥିଲେ ମଧ୍ୟ, ରାଜ୍ୟ ପାଇଁ ଭୀଷଣ ଯୁଦ୍ଧ କରିଥିଲେ । ମହାଭାରତ ଯୁଦ୍ଧରୁ ଆର୍ଯ୍ୟଜାତିର ଯୁଦ୍ଧ-ନୈପୁଣ୍ୟର କ୍ରମୋନ୍ନତି ଜଣାଯାଏ । ମଧ୍ୟମ ପାଣ୍ଡବ ଅର୍ଜୁନ ଦ୍ରୌପଦୀଙ୍କ ସ୍ୱୟମ୍ବର ସଭାରେ ଅତି ଚମତ୍କାର ଭାବରେ ମତ୍ସ୍ୟ-ଚକ୍ଷୁ ବିନ୍ଧ କରି ଦ୍ରୌପଦୀଙ୍କୁ ପତ୍ନୀ ରୂପେ ପାଇଥିଲେ । ଏଥିରୁ



ଧର୍ମରାଜ, ଅର୍ଜୁନମାନେ ଧନୁଃଶର ବ୍ୟବହାର କରି ଜାଣିଥିଲେ। ସେମାନଙ୍କ ପୂର୍ବରେ ରଥ, ହସ୍ତୀ ଓ ଅଶ୍ୱ ବ୍ୟବହୃତ ହେଉଥିଲା। ପ୍ରତ୍ୟେକ ଯୋଦ୍ଧା-ଦଳ ଉପରେ ଜଣେ ଜଣେ ସେନାପତି ରଖାଯାଉଥିଲା। ସେମାନେ

ଉତ୍କୃଷ୍ଟ ଧରଣର ଅସ୍ତ୍ର ଶସ୍ତ୍ର ବ୍ୟବହାର କରୁଥିଲେ । ଯୁଦ୍ଧ କ୍ଷେତ୍ରରେ ସୈନିକମାନଙ୍କୁ ଏକ ଚକ୍ରାକାର ବ୍ୟୂହାକାରରେ ରଖାଯାଉ ଥାଏ । ଶତ୍ରୁ ଆକ୍ରମଣରୁ ରକ୍ଷା ପାଇବା ପାଇଁ ରାଜାମାନେ 'ଗଡ଼ଖାଇ' ଖୋଳାଉ ଥାନ୍ତି । ପ୍ରତ୍ୟେକ ରାଜ୍ୟର ଗୋଟିଏ ଗୋଟିଏ ରାଜଧାନୀ ଥିଲା । ସେଠାରେ ରାଜା ବାସ କରୁଥାନ୍ତି । ରାଜା, ମନ୍ତ୍ରୀ ଓ ରାଜ୍ୟର ବିଶିଷ୍ଟ ଲୋକଙ୍କ ଦ୍ୱାରା ରାଜ୍ୟ ଶାସିତ ହେଉଥିଲା । ପ୍ରଜାମାନେ ରାଜାଙ୍କୁ କର ଦେଉଥିଲେ । କୌଣସି ପ୍ରଜା ଦୋଷ କଲେ, ରାଜାଙ୍କ ଦ୍ୱାରା ଦଣ୍ଡିତ ହେଉଥିଲା ।

---

## ବୁଦ୍ଧଦେବ

ଆର୍ଯ୍ୟମାନେ ଆର୍ଯ୍ୟାବର୍ତ୍ତରେ ବହୁକାଳ ନିବାସ କରିଥିଲେ । ଜାତିଭେଦ ଆରମ୍ଭ ହେବାରୁ, ଧର୍ମ ସମ୍ବନ୍ଧୀୟ ବିଷୟ ସବୁ କେବଳ ବ୍ରାହ୍ମଣ ଜାତି ହାତରେ ରହିଲା । ସେତେବେଳେ ବ୍ରାହ୍ମଣମାନେହିଁ ଯଜ୍ଞାଦି ଅନୁଷ୍ଠାନମାନ କରୁଥାନ୍ତି । ଅନ୍ୟାନ୍ୟ ଜାତି ପକ୍ଷରେ ଯଜ୍ଞାନୁଷ୍ଠାନ ନିଷିଦ୍ଧ ଥିଲା । ଯଜ୍ଞରେ ପଶୁବଳି ଦିଆଯାଉ ଥାଏ । ଯଜ୍ଞର ପୁରୋହିତ ଦକ୍ଷିଣା ବା ପୁରସ୍କାର ସ୍ୱରୂପ ବହୁ ଧନରତ୍ନ ପାଉଥିଲେ । ଧର୍ମ କର୍ମ ସବୁ କେବଳ ବ୍ରାହ୍ମଣମାନଙ୍କ ହାତେ ରହିବାରୁ, ଆର୍ଯ୍ୟ ଧର୍ମ ଅର୍ଥାତ୍ ବେଦ ଧର୍ମ ସର୍ବସାଧାରଣଙ୍କର ବୋଧଗମ୍ୟ ହୋଇପାରିଲା ନାହିଁ । ବ୍ରାହ୍ମଣମାନଙ୍କର ଏହି ଏକଚ୍ଛତ୍ର ଅଧିକାରରେ, ବ୍ରାହ୍ମଣେତର ଜାତି ସକଳ ଭାରି ଅସନ୍ତୁଷ୍ଟ ଓ ଅତୃପ୍ତ ହୋଇ ଉଠିଲେ । ନାନା ପ୍ରକାର ପର୍ବ ପାର୍ବଣ, ଉତ୍ସବାନୁଷ୍ଠାନ ଯୋଗେ ଆର୍ଯ୍ୟ ଧର୍ମ କ୍ରମେ ସାରଶୂନ୍ୟ ହେବାର ଦେଖି କେତେକ ଲୋକ ସଂସ୍କାର ଚେଷ୍ଟା କଲେ ।

ପଶୁବଳ ବିଷୟରେ ସଂସ୍କାରକମାନେ ଖଡ୍ଗହସ୍ତ ହୋଇ ବାହାରିଲେ; କିନ୍ତୁ ବ୍ରାହ୍ମଣମାନେ ତାହା ବନ୍ଦ କରିବାକୁ ସ୍ୱୀକୃତ ହେଲେ ନାହିଁ । ସାଧାରଣ ଲୋକେ ଧର୍ମ ସମ୍ବନ୍ଧୀୟ ବିଷୟ କିଛି ବୁଝିପାରୁ ନ ଥିଲେ ଏବଂ ସେମାନଙ୍କୁ ଧର୍ମଶିକ୍ଷା ଦେବାପାଇଁ ବ୍ରାହ୍ମଣ ଜାତି କୁଣ୍ଠିତ ହେଉଥିଲେ । ଧର୍ମ ସଂକ୍ରାନ୍ତ ବିଷୟରେ ସର୍ବସାଧାରଣର ଯେପରି ସ୍ୱାଧୀନତା ଓ ଅଧିକାର ରହି ପାରିବ, ନିଷ୍ଠୁର ଅନୁଷ୍ଠାନମାନ ଯେପରି ଉଠାଇ ଦିଆଯିବ, ସେଥିପାଇଁ ସଂସ୍କାରକମାନେ ପ୍ରବଳ ଚେଷ୍ଟା କରିବାକୁ ଲାଗିଲେ । ଏହିଭଳି ସଂସ୍କାରକମାନଙ୍କ ମଧ୍ୟରେ ମହାବୀର ଓ ବୁଦ୍ଧଦେବ ସର୍ବ ପ୍ରଧାନ । ଏ ଦୁହେଁ ଖ୍ରୀଷ୍ଟପୂର୍ବ ୭ମ ଶତାବ୍ଦୀରେ ଜନ୍ମଗ୍ରହଣ କରିଥିଲେ ।

ବୁଦ୍ଧଦେବଙ୍କ ପ୍ରଥମ ନାମ ସିଦ୍ଧାର୍ଥ । ଏ କପିଳବାସ୍ତୁର ରାଜା ଶୁଦ୍ଧୋଦନଙ୍କର ଏକମାତ୍ର ପୁତ୍ର ଥିଲେ । କପିଳବାସ୍ତୁ ଗୋଟିଏ କ୍ଷୁଦ୍ର ରାଜ୍ୟ । ତାହା ହିମାଳୟର ପାଦ ଦେଶରେ (ନେପାଳ ନିକଟରେ) ଥିଲା । ଏଠାରେ ସିଦ୍ଧାର୍ଥ ଖ୍ରୀଷ୍ଟପୂର୍ବ ୬୨୩ ସାଲରେ ଜନ୍ମଲାଭ କରିଥିଲେ । ତାଙ୍କ ଜନ୍ମର ସପ୍ତମ ଦିବସରେ ତାଙ୍କ ମା ମାୟାଦେବୀ ପ୍ରାଣତ୍ୟାଗ କଲେ । ଶୁଦ୍ଧୋଦନ ମାତୃହୀନ ସିଦ୍ଧାର୍ଥଙ୍କୁ ବହୁତ ଯତ୍ନ ଆଦରରେ ଲାଳନ ପାଳନ କରିବାକୁ ଲାଗିଲେ । ସେ ପୁତ୍ରଙ୍କ ସତ୍‌ଶିକ୍ଷା ପ୍ରତି ବିଶେଷ ଦୃଷ୍ଟି ଦେଲେ । ସିଦ୍ଧାର୍ଥ କ୍ରମେ ସକଳ ଶାସ୍ତ୍ର ଅଭ୍ୟାସ କଲେ ସତ, କିନ୍ତୁ ସେ ଗୋଟିଏ ବିଶେଷ ଅଭାବ ଅନୁଭବ କରିବାକୁ ଲାଗିଲେ । ଅଭାବଟା ଯେ କଣ, ସେ ତା ଆଗେ ଆଗେ ସ୍ପଷ୍ଟ ବୁଝି ପାରିଲେ ନାହିଁ ।

ସିଦ୍ଧାର୍ଥ ଯୁବକ ହେବାରୁ, ରାଜା ଜଣେ ରୂପବତୀ ରାଜକନ୍ୟା ସଙ୍ଗେ ତାଙ୍କର ବିବାହ ଦେଲେ । ନବଦମ୍ପତି କେତେକ ଦିନ ବଡ଼ ସୁଖରେ ରହିଲେ । ସିଦ୍ଧାର୍ଥଙ୍କର ଗୋଟିଏ ପୁଅ ଜନ୍ମ ଲେଲା—ନାମ ରାହୁଲ ।



ସୁଖ ଅଡ଼ମ୍ବର ଓ ରାଜୈଶ୍ୱର୍ଯ୍ୟ ପ୍ରତି ସିଦ୍ଧାର୍ଥ, ଆକୃଷ୍ଟ ନ ଥିଲେ । ସେ ସର୍ବଦା ଚିନ୍ତାଶୀଳ ହୋଇଥିଲେ । ମନୁଷ୍ୟର କଷ୍ଟ ଦେଖି ତାଙ୍କ ହୃଦୟ ଦୟାରେ ଗଳିତ ହୋଇ ଯାଉଥିଲା । ଅଶ୍ୱାରୋହଣ, ମୃଗୟାଦି ବ୍ୟସନରେ ସେ ଅଦୌ ଆସକ୍ତ ନ ଥିଲେ ।

ସେ ଥରେ ନଗରର ଚତୁର୍ଦିଗରେ ଭ୍ରମଣ କରିବାବେଳେ

କେତୋଟି କରୁଣ ଦୃଶ୍ୟ ଦେଖି ନିତାନ୍ତ ଚିନ୍ତିତ ଓ ବ୍ୟସ୍ତ ହୋଇ ପଡ଼ିଲେ । ସେ ଜଣେ ଶୀର୍ଣ୍ଣକାୟ, ପକ୍ୱକେଶ ଓ ଗଳିତଦନ୍ତ ବୃଦ୍ଧଙ୍କୁ ଦେଖି ଭାବିଲେ, ଯେ ଦିନେ ତାଙ୍କୁ ବି ଏହି ବାର୍ଦ୍ଧକ୍ୟ ଭୋଗକରିବାକୁ ହେବ । ଏବଂ ଯୌବନର ସେହି ସୌନ୍ଦର୍ଯ୍ୟ ଚିରସ୍ଥିର ରହିବ ନାହିଁ । ଆଉ ଦିନେ ସେ ଜଣେ ରୁଗ୍ଣ ବ୍ୟକ୍ତିର ଦୁଃଖ-ଯନ୍ତ୍ରଣା ଦେଖି ସ୍ଥିର କଲେ, ମାନବ-ଜୀବନ ଚିର ଦୁଃଖପୂର୍ଣ୍ଣ, ହାହାକାରମୟ । ଅନ୍ୟ ଏକ ଦିନ ଦେଖିଲେ ଯେ, ଗୋଟିଏ ଶବ ପଛରେ କେତେଜଣ ବିକଳ କ୍ରନ୍ଦନ କରି କରି ଯାଉଛନ୍ତି । ଏହିଭଳି କେତେକ କରୁଣ ଦୃଶ୍ୟ ଦେଖି ରାଜ-ସୁଖ ପ୍ରତି ସିଦ୍ଧାର୍ଥଙ୍କର ଖେଦ ଓ ଅଭକ୍ତି ଜନ୍ମେଇ ଗଲା । ଏହି ସକଳ ଦୁଃଖର ଲାଘବ ନିମନ୍ତେ ଉପାୟ ଖୋଜିବାକୁ ସେ ଦୃଢ଼ ସଂକଳ୍ପ କଲେ । ସେ ବୁଝି ପାରିଲେ ଯେ, ରାଜଭବନର ଭୋଗବିଳାସ ମଧ୍ୟରେ ରହି ଏହି କଠିନ ସମସ୍ୟାର ସମାଧାନ କରି ପାରିବେ ନାହିଁ । ଏଣୁ ରାଜଭବନ, ପରିବାର ଓ ରାଜ୍ୟ ଛାଡ଼ି ସତ୍ୟ ଅନ୍ୱେଷଣାର୍ଥେ ବାହାରିବାକୁ ସ୍ଥିର କଲେ । ସେ ତାଙ୍କ କଳ୍ପନା କାର୍ଯ୍ୟରେ ପରିଣତ କଲେ । ଦିନେ ରାତି-ବେଳେ ତାଙ୍କ ସ୍ତ୍ରୀ ଓ ନବଜାତ ପୁତ୍ର ନିଦ୍ରାରେ ଥିବା ସମୟରେ ସେ ଅଶ୍ୱାରୋହଣ କରି ଜଣେ ବିଶ୍ୱସ୍ତ ଭୃତ୍ୟଙ୍କୁ ସଙ୍ଗେ ଧରି ରାଜ୍ୟ ତ୍ୟାଗ କଲେ । ଆରଦିନ ସକାଳେ ସେ ତାଙ୍କ ଭୃତ୍ୟଙ୍କୁ ଅଶ୍ୱ ଓ ନିଜର ବସନଭୂଷଣାଦି ଦେଇ ରାଜ୍ୟକୁ ଫେରାଇଲେ ଏବଂ ନିଜେ ସନ୍ନ୍ୟାସି-ବେଶରେ ଚାଲିଲେ ।

ସେହି ସମୟରେ ମଗଧ ପ୍ରଦେଶ ଖୁବ୍ ପ୍ରସିଦ୍ଧ ଥିବା ଏବଂ ସେଠା ନଗର ସମୂହରେ ବିଖ୍ୟାତ ପଣ୍ଡିତମାନେ ବାସ କରୁଥିବା କଥା ତୁମ୍ଭେମାନେ ୧ମ ଅଧ୍ୟାୟରେ ପଢ଼ିଛ । ଜୀବନ-ସମସ୍ୟା ପ୍ରଶ୍ନ ବୁଝିବା ପାଇଁ ସିଦ୍ଧାର୍ଥ ପ୍ରଥମରେ ମଗଧର ବୈଶାଳୀ ନଗରକୁ ଯାଇ, କେତେକ ଦିନ ସେଠାରେ ଜଣେ ପ୍ରସିଦ୍ଧ ପଣ୍ଡିତଙ୍କର ଶିଷ୍ୟ ହୋଇ ରହିଲେ । ପରେ

ସେ ରାଜଗୃହନାମକ ନଗରରେ ଯାଇ ଅନ୍ୟ ଜଣେ ଆଚାର୍ଯ୍ୟଙ୍କର ଶିଷ୍ୟତ୍ୱ ଗ୍ରହଣ କଲେ । ସେଠାରେ ସେ ବହୁ ଶାସ୍ତ୍ର-ଜ୍ଞାନ ଲାଭ କଲେ ସତ୍ୟ, କିନ୍ତୁ ସେଥିରେ ତାଙ୍କର ଆଦୌ ତୃପ୍ତି ହୋଇ ପାରିଲା ନାହିଁ ।

ଶେଷରେ ସିଦ୍ଧାର୍ଥ ଘୋର ଅରଣ୍ୟରେ ଯାଇ କଠୋର ତପସ୍ୟା ଆରମ୍ଭ କଲେ । ପାନାହାର ତ୍ୟାଗ କରି ବହୁଦିନ ଏକ ଧ୍ୟାନରେ ବସି ରହିଲେ । ଏଥିରେ କି ତାଙ୍କର କଷ୍ଟ ମାତ୍ର ସାର ହେଲା—ଯେଉଁ ତିମିରେ, ସେହି ତିମିରେହିଁ ରହିଲେ । ଏଣୁ ତପସ୍ୟା କି ତ୍ୟାଗ କଲେ । ପରେ ସେ ନିରଞ୍ଜନ ନଦୀ ନିକଟରେ ଏକ ବୃକ୍ଷ ମୂଳରେ ବସି ଚିନ୍ତା କରିବାକୁ ଲାଗିଲେ । ଅଳ୍ପ କେତେକ ଦିନ ପରେ ସେଠାରେ ହଠାତ୍ ତାଙ୍କର ଜ୍ଞାନୋଦୟ ହେଲା । ତାଙ୍କର ଦୃଢ଼ ଧାରଣା ଜନ୍ମିଲା ଯେ, ସେ ଜୀବନ-ସମସ୍ୟାର ସମାଧାନ କରି ପାରିଛନ୍ତି । ଏହି ଜ୍ଞାନ ବା ବୁଦ୍ଧି ଲାଭ କରିବାରୁ, ସେହିଦିନୁ ତାଙ୍କର ନାମ ହେଲା 'ବୁଦ୍ଧଦେବ' । ସେ ଯେଉଁ ସତ୍ୟ ପାଇଲେ, ତହିଁର ସାରମର୍ମ ଏହି:—ସଂସାର ଦୁଃଖମୟ, ଦୁଃଖର କାରଣ କାମନା, କାମନାର ବିନାଶରେ ଦୁଃଖର ବିନାଶ ଏବଂ ବିଶୁଦ୍ଧ ନୀତିମୟ ଜୀବନ ସାହାଯ୍ୟରେ କାମନାର ବିନାଶ ।

ତାଙ୍କର ଏହି ଜ୍ଞାନ ଲୋକମାନଙ୍କ ମଧ୍ୟରେ ପ୍ରଚାର କରିବା ଉଦ୍ଦେଶ୍ୟରେ, ବୁଦ୍ଧଦେବ ତାଙ୍କ ଜନ୍ମ-ସ୍ଥାନକୁ ଫେରିଲେ । ସେଠାରେ ସେ ନିଜର ନୂତନ ଧର୍ମ ପ୍ରଚାର କରିବାକୁ ଲାଗିଲେ । ତାଙ୍କ ଧର୍ମରେ ଯଜ୍ଞାନୁଷ୍ଠାନ, ହିଂସାଜନକ ପଶୁବଧ ଓ ବ୍ରାହ୍ମଣ-ପ୍ରାଧାନ୍ୟ ନ ଥିଲା । ତାହା ଗ୍ରହଣ କରିବା ନିମନ୍ତେ ସମସ୍ତଙ୍କର ସମାନ ଅଧିକାର ରହିଲା । ସୁତରାଂ ଅନେକେ ବୌଦ୍ଧଧର୍ମରେ ଆଗ୍ରହ ସହିତ ଦୀକ୍ଷିତ ହେଲେ ।

ପରେ ବୁଦ୍ଧଦେବ ଅନ୍ୟାନ୍ୟ ବହୁ ସ୍ଥାନରେ ଯାଇ ତାଙ୍କ ଧର୍ମ ପ୍ରଚାର କରିବାକୁ ଲାଗିଲେ । ସେତେବେଳେ ମଗଧ ଦେଶର ରାଜା

ଥିଲେ ବିମ୍ବିସାର । ବିମ୍ବିସାରଙ୍କ ଏବଂ ତାଙ୍କ ମୃତ୍ୟୁ ପରେ ତାଙ୍କ ପୁତ୍ର ଅଜାତଶତ୍ରୁ ବୁଦ୍ଧଦେବଙ୍କ ପ୍ରତି ବିଶେଷ ଭକ୍ତି, ସମ୍ମାନ ଦେଖାଇଥିଲେ ।

ବୁଦ୍ଧଦେବ ବାରାଣସୀ ନିକଟସ୍ଥ ସାରନାଥ ଉଦ୍ୟାନରେ ତାଙ୍କ ଧର୍ମ ପ୍ରଚାର କରିଥିଲେ । ସେଠାରେ ତାଙ୍କର ପାଞ୍ଚଜଣ ଶିଷ୍ୟ ହେଲେ । ଦେଖୁ ଦେଖୁ ବହୁ ଲୋକ ବୌଦ୍ଧମତ ଗ୍ରହଣ କଲେ । ବୁଦ୍ଧଦେବ ଏହି ପ୍ରଚାର କାର୍ଯ୍ୟରେ ତାଙ୍କ ଜୀବନର ୪୫ ବର୍ଷ କାଳ ବ୍ୟୟ କରି ୮୦ ବର୍ଷ ବୟସରେ କୁଶୀନଗରଠାରେ ପ୍ରାଣତ୍ୟାଗ କଲେ ।

ବୌଦ୍ଧଧର୍ମରେ ଅତି ସରଳ କେତୋଟି ଉପଦେଶ ଅଛି— ତାହାହିଁ ସେହି ଧର୍ମର ପ୍ରଧାନ ଅଂଶ । ବୁଦ୍ଧଦେବ ଲୋକଙ୍କୁ ଉପଦେଶ ଦେଉଥାନ୍ତି ଯେ, ଲୋକେ ଚୋରି, ପ୍ରାଣିହିଂସା ଓ ପରସ୍ତ୍ରୀ-ହରଣ କରିବେ ନାହିଁ, ସତ୍ୟ କହିବେ, ଅନ୍ୟର କୁତ୍ସାରଟନା କରିବେ ନାହିଁ, ଅଶ୍ଳୀଳ କଥା କହିବେ ନାହିଁ ଇତ୍ୟାଦି । ସତ୍ୟକଥନ, ଜୀବପ୍ରତି ଦୟା, ଗୁରୁଜନ ପ୍ରତି ଭକ୍ତି ଓ ସମ୍ମାନ—ଏସବୁ ତାଙ୍କ ଧର୍ମର ସାର ।

ବୌଦ୍ଧମତ ଭାରତବର୍ଷରେ ଜାତ ହେଲା ସତ୍ୟ, କିନ୍ତୁ ତାହା ଏ ଦେଶରେ ଚିରଦିନ ତିଷ୍ଠି ପାରିଲା ନାହିଁ । ବର୍ତ୍ତମାନ ଏସିଆରେ ଚୀନ ଓ ଜାପାନ ଦେଶର ଲୋକେ ବୌଦ୍ଧଧର୍ମାବଲମ୍ବୀ । ଅଳ୍ପକାଳ ବର୍ମା ବ୍ୟତୀତ ଭାରତର ଅନ୍ୟ କୌଣସି ଅଞ୍ଚଳରେ ଏହି ଧର୍ମ ପ୍ରଚଳିତ ନୁହେ କହିଲେ ଚଳେ । ଏହି ମତ ଅନେକ ଦିନ ଆମ ଦେଶରେ ବ୍ୟାପିଥିଲା । ଶେଷରେ ବ୍ରାହ୍ମଣମାନେ ଏହି ଧର୍ମର କେତେକାଂଶ ନିଜ ଧର୍ମରେ ମିଶାଇ ରଖିଲେ—ବୁଦ୍ଧଦେବଙ୍କୁ ବିଷ୍ଣୁଙ୍କ ଅବତାର ସ୍ୱରୂପ ମାନି ଚଳିଲେ । ଏଥିଯୋଗୁଁ ବୌଦ୍ଧ ଓ ହିନ୍ଦୁ ଧର୍ମର ଏକରକମ ମିଳନ ହୋଇଛି କହିଲେ ଚଳେ ।



## ଖ୍ରୀଷ୍ଟପୂର୍ବ ୬୦୦ ଠାରୁ ଖ୍ରୀ:ପୂ: ୩୦୦ ଯାଏଁ
# ଭାରତର ଅବସ୍ଥା

ଖ୍ରୀଷ୍ଟପୂର୍ବ ୭ମ ଶତାବ୍ଦୀରେ ଏବଂ ପରେ, ଅର୍ଥାତ୍ ବୁଦ୍ଧଦେବଙ୍କ ସମୟରେ ଭାରତରେ କେତେଗୋଟି ପ୍ରଧାନ ରାଜ୍ୟ ଥିଲା । ପଞ୍ଜାବ ପ୍ରଦେଶରେ ତକ୍ଷଶିଳା ନାମରେ ଗୋଟିଏ ସମୃଦ୍ଧିଶାଳିନୀ ନଗରୀ ଥିଲା । ଗଙ୍ଗା ଓ ସିନ୍ଧୁ ନଦୀ ତଟରେ ଅନେକ ପ୍ରଧାନ ନଗର ଥିଲା । ଅବନ୍ତୀ ବା ମାଳବ ପ୍ରଦେଶର ରାଜଧାନୀ ଥିଲା ଉଜ୍ଜୟିନୀ ନଗର । କୋଶଳ ପ୍ରଦେଶ ଅଯୋଧ୍ୟାର ଉତ୍ତର ଭାଗରେ ଥିଲା । କପିଳବାସ୍ତୁ ଭଳି କେତୋଟି ଛୋଟ ରାଜ୍ୟ କୋଶଳରାଜାଙ୍କ ଅଧୀନରେ ଥିଲା । ସେତେବେଳେ 'ଲିଚ୍ଛବି' ନାମକ ଜାତି ଏକ ସ୍ୱତନ୍ତ୍ରରାଜ୍ୟ ସ୍ଥାପନ କରିଥିଲେ । ସେହି ରାଜ୍ୟର ଶାସନ ସେଠାର ପ୍ରଜାମାନଙ୍କ ହାତରେ ଥିଲା । ପ୍ରଜାମାନେ ମିଳି ଜଣେ ନାୟକ ନିର୍ବାଚନ କରୁଥାନ୍ତି । ଏହି ସମସ୍ତ ପ୍ରଦେଶ ଅପେକ୍ଷା ଅଧିକ ବଡ଼ ଥିଲା ମଗଧ ।

ମଗଧର ଆଧୁନିକ ନାମ ବିହାର । ପୂର୍ବ ଯୁଗରେ ଏହି ରାଜ୍ୟ କେତେକଜଣ କ୍ଷମତାଶାଳୀ ରାଜାଙ୍କ ଯୋଗେ ଖୁବ୍ ଖ୍ୟାତି ଲାଭ କରିଥିଲା । ଏହି ରାଜାମାନଙ୍କ ଅନୁକୂଲ୍ୟରେ ବୌଦ୍ଧ ଓ ଜୈନ ଧର୍ମର ବିସ୍ତୃତ ଉନ୍ନତି ହୋଇଥିଲା । ମଗଧ ପ୍ରଦେଶରେ ଶୈଶୁନାଗ ନାମକ ଜଣେ ରାଜା ଶାସନ ଚଳାଉଥିଲେ । ସେ ରାଜା ହେବା ଆଗେ ବାରାଣସୀରେ ଜଣେ ସୈନ୍ୟାଧ୍ୟକ୍ଷ ହୋଇଥିଲେ, ପରେ ଗିରିବ୍ରଜ ବା ପ୍ରାଚୀନ ରାଜଗୃହରେ ରାଜଧାନୀ ସ୍ଥାପନକରି ମଗଧ ଶାସନ ଚଳାଇଲେ ।

ଶୈଶୁନାଗବଂଶର ୫ମ ରାଜା ବିମ୍ବିସାର । ସେ ନିଜ ବାହୁବଳରେ ପୈତୃକ ରାଜ୍ୟର ସୀମା ଅନେକ ଦୂର ବଢ଼ାଇଥିଲେ । ସେ ଅଙ୍ଗଦେଶ ଜୟ କରି ତାହା ନିଜ ରାଜ୍ୟରେ ମିଶାଇଲେ । ତାଙ୍କ

ସମୟରେ ନୂତନ ରାଜଗୃହ ନାମକ ନଗର ସ୍ଥାପିତ ହୋଇଥିଲା । ତାହା ମଗଧର ରାଜଧାନୀ । ବିମ୍ବିସାରଙ୍କ ସମୟରେ ମଗଧର ଖୁବ୍ ଉନ୍ନତି ହୋଇଥିଲା । ଏଥିପୂର୍ବେ କହାଯାଇଅଛି ଯେ, ବିମ୍ବିସାର ବୁଦ୍ଧଦେବ ଓ ବର୍ଦ୍ଧମାନ ମହାବୀରଙ୍କ ପ୍ରତି ଯଥେଷ୍ଟ ଭକ୍ତି ସମ୍ମାନ ଦେଖାଇ, ବୌଦ୍ଧ ଓ ଜୈନ ମତର ବିସ୍ତାର ଉନ୍ନତି-ସାଧନ କରିଥିଲେ । ସେ ନିଜେ ଜୈନ ଧର୍ମରେ ଦୀକ୍ଷିତ ହୋଇଥିଲେ । ଜୈନମତ ବୌଦ୍ଧମତ ପରି ଏକ ହିଂସା-ହୀନ ମତ । ବିମ୍ବିସାର ମୋଟରେ ୨୮ ବର୍ଷ ରାଜତ୍ୱ କରିଥିଲେ । ଖ୍ରୀଷ୍ଟ-ପୂର୍ବ ୫୮୨ ରେ ସେ ରାଜ୍ୟଭାର ଗ୍ରହଣ କରିଥିଲେ, ଏବଂ ଖ୍ରୀଷ୍ଟପୂର୍ବ ୫୫୦ ସାଲରେ ପ୍ରାଣତ୍ୟାଗ କଲେ ।

ବିମ୍ବିସାରଙ୍କ ପରେ ତାଙ୍କ ପୁତ୍ର ଅଜାତଶତ୍ରୁ ମଗଧ-ସିଂହାସନରେ ବସିଲେ । ସେ ୨୭ ବର୍ଷ କାଳ ରାଜପଣ କରିଥିଲେ । ରାଜା ହେବାର କେତେ ଦିନ ପରେ, ସେ ସୋନ ନଦୀ ତୀରରେ ପାଟଲୀପୁତ୍ର ନାମକ ଦୁର୍ଗ ସ୍ଥାପନ କଲେ । ଦୁର୍ଗଟି ଅଳ୍ପେ ଅଳ୍ପେ ବୃଦ୍ଧିପାଇ ଶେଷରେ ମଗଧ ରାଜ୍ୟର ପ୍ରଧାନ ନଗର ହେଲା । ବର୍ତ୍ତମାନ ଯେଉଁ ସ୍ଥାନରେ ପାଟଣା ଓ ବାଙ୍କିପୁର ଅଛି, ସେଠାରେ ଏହି ପ୍ରସିଦ୍ଧ ନଗର ସ୍ଥାପିତ ହୋଇ ଥିଲା । ଅଜାତଶତ୍ରୁ କୋଶଳ ରାଜକନ୍ୟାଙ୍କୁ ବିବାହ କରିଥିଲେ । ତାଙ୍କ ମାତା ଲିଚ୍ଛବି-ଦଳ-ନାୟକଙ୍କର କନ୍ୟା । ଏଭଳି ନିକଟ ସମ୍ବନ୍ଧ ଥିଲେହେଁ, ମଗଧ ଏବଂ ଏହି ଦୁଇ ରାଜ୍ୟ ମଧ୍ୟରେ ବରାବର ଯୁଦ୍ଧ ଚାଲୁଥାଏ । କାରଣ, ଅଜାତଶତ୍ରୁ ସେହି ଦୁଇ ରାଜ୍ୟ ଆକ୍ରମଣ କରୁଥିଲେ । ଯୁଦ୍ଧରେ ଲିଚ୍ଛବିମାନେ ପରାସ୍ତ ନ ହେଲେ ସୁଦ୍ଧା, କୋଶଳ ମଗଧ-ରାଜାଙ୍କ ଅଧୀନରେ ଆସିଲା ।

ଅଜାତଶତ୍ରୁ ମଧ୍ୟ ବୁଦ୍ଧଦେବ ଓ ମହାବୀରଙ୍କ ପ୍ରତି ଅତ୍ୟନ୍ତ ଭକ୍ତି, ସମ୍ମାନ ଦେଖାଉଥାନ୍ତି । ଥରେ ସେ ନିଜେ ଯାଇ, ଏହି ଦୁଇ ମହାତ୍ମାଙ୍କୁ ନଗର-ଦ୍ୱାରରୁ ବରଣ କରି ଆଣିଥିଲେ । ତାଙ୍କ ରାଜତ୍ୱ ସମୟରେ

ଗୌତମ ବୁଦ୍ଧଙ୍କର ମୃତ୍ୟୁ ଘଟିଥିଲା । ଅଜାତଶତ୍ରୁ ଖ୍ରୀଷ୍ଟପୂର୍ବ ୫୨୭ ସାଲରେ ପ୍ରାଣତ୍ୟାଗ କରିଥିଲେ ।

ତାଙ୍କର ମୃତ୍ୟୁ ପରେ, ଅନ୍ୟ କେତେକ ଜଣ ରାଜା ମଗଧ-ସିଂହାସନରେ ବସିଲେ । କ୍ରମଶଃ ମଗଧ ରାଜ୍ୟର ସର୍ବାଙ୍ଗୀନ ଉନ୍ନତି ହେବାକୁ ଲାଗିଲା । ଆର୍ଯ୍ୟାବର୍ତ୍ତରେ ମଗଧ ରାଜାହିଁ ବିଶାଳ ସାମ୍ରାଜ୍ୟ ସ୍ଥାପନ କରିବାକୁ ସମର୍ଥ ହେଲେ ।

ଶୈଶନାଗବଂଶରେ ୧୦ ଜଣ ରାଜା ଥିଲେ । ଏହି ବଂଶର ଶେଷ ରାଜା ମହାନନ୍ଦ । ତାଙ୍କପରେ ମହାପଦ୍ମନନ୍ଦ ମଗଧର ନୃପତି ହେଲେ । ତାଙ୍କର ଆଠ ପୁଅ । ଏମାନେ ସମସ୍ତେ ନନ୍ଦ ବଂଶର ରାଜା ବୋଲାଇଲେ । ଏହି ରାଜାମାନେ ପ୍ରାୟ ୧୦୦ ବର୍ଷ କାଳ ମଗଧର ଶାସକ ଥିଲେ । ସେମାନଙ୍କ ରାଜତ୍ୱରେ ମଗଧର ବିସ୍ତୃତ ଅଭିବୃଦ୍ଧି ହୋଇ ଥିଲା ।

ନନ୍ଦରାଜାମାନେ ବ୍ରାହ୍ମଣ ଜାତିକୁ ବଡ଼ ଘୃଣା କରୁଥାନ୍ତି — ସେମାନଙ୍କ ପ୍ରତି ବ୍ରାହ୍ମଣମାନଙ୍କର ବି ଭୟଙ୍କର ଘୃଣାଥିଲା । ନନ୍ଦବଂଶର ରାଜାମାନେ ଖୁବ୍ କ୍ଷମତାପନ୍ନ । ସେମାନଙ୍କ ଅଧୀନରେ ୨୦,୦୦୦ ଅଶ୍ୱାରୋହୀ, ୨୦୦,୦୦୦ ପଦାତିକ, ୨୦୦୦ ରଥାରୋହୀ ଏବଂ ୪୦୦୦ ଗଜାରୋହୀ ସେନା ଥିଲେ । ଏହି ପ୍ରକାଣ୍ଡ ସୈନ୍ୟ ଯୋଗେ ମଗଧରାଜ୍ୟ ସବଳ ଓ ସୁରକ୍ଷିତ ଥିଲା ।

ଖ୍ରୀଷ୍ଟପୂର୍ବ ୫୧୭ ସାଲରେ, ଯେତେବେଳେ ମଗଧ ସାମ୍ରାଜ୍ୟ ଦୃଢ଼ଭାବରେ ସ୍ଥାପିତ ହୋଇଥିଲା, ସେହି ସମୟରେ କେତେକ ଜଣ ବିଦେଶୀ ଶାସକ ଭାରତ ଜିଣିବା ଉଦ୍ଦେଶ୍ୟରେ ସୈନ୍ୟ ପଠାଇଲେ । କିନ୍ତୁ ଏହି ସେନା ମଗଧର ସୀମା ଛୁଇଁବା ମାତ୍ର ପାରିଲା ନାହିଁ । ପାରସ୍ୟଦେଶର ଦେରିଅସ୍ ( ୫୨୧—୪୮୫ ଖ୍ରୀଷ୍ଟପୂର୍ବ ) ବିପୁଳ ସୈନ୍ୟ ସଙ୍ଗେ ତାଙ୍କ ସେନାପତି ସ୍କାଇଲକ୍ସଙ୍କୁ ସିନ୍ଧୁ ନଦୀ ଆଡ଼େ ପଠାଇଲେ । ସ୍କାଇଲକସ୍

ସିନ୍ଧୁ ନଦୀର ଉପରଭାଗରୁ ନୌକା ଚଳାଇ ସମୁଦ୍ର ପ୍ରତି ଅଗ୍ରସର ହେବାକୁ ଲାଗିଲେ । ଏପରି କ୍ରମେ ସିନ୍ଧୁ ନଦୀ ପ୍ରବାହିତ ପ୍ରଦେଶ ଦେରଅସ୍‌ଙ୍କର ଅଧୀନ ହୋଇ ପଡ଼ିଲା । ଦେରଅସଙ୍କର ପୁତ୍ର ଜେର୍‌ସର୍‌ଙ୍କ ସମୟରେ ମଧ୍ୟ, ପାରସ୍ୟଦେଶର ଗୋଟିଏ Satrap ବା ଅଧୀନ ରାଜ୍ୟ ହୋଇଥିଲା । ଏଠାରୁ ପାରସ୍ୟର ରାଜକୋଷକୁ ବହୁଧନ ଖଜଣା ବା କର ରୂପେ ଯାଉଥାଏ ।

ସେତେବେଳେ ମଗଧ ସଙ୍ଗେ ପଞ୍ଜାବର କୌଣସି ସମ୍ବନ୍ଧ ନ ଥିଲା । ପଞ୍ଜାବ ବହୁକାଳ ପାରସ୍ୟ ଅଧୀନରେ ନ ରହିଲା । ବୈଦେଶିକମାନଙ୍କ ପତନ ପରେ, ଏଠାରେ ଛୋଟ ଛୋଟ ଅନେକ ରାଜ୍ୟ ସ୍ଥାପିତ ହେଲା । ବହୁକାଳ ପରେ ଏହି ସକଳ ରାଜ୍ୟ ମଗଧର ଅନ୍ତର୍ଭୁକ୍ତ ହେଲା । ମଗଧ ସାମ୍ରାଜ୍ୟ ନନ୍ଦବଂଶ ରାଜାଙ୍କ ଶାସନରେ ଥିବାବେଳେ, ଜଗତ-ପ୍ରସିଦ୍ଧ ମହାବୀର ଆଲେକ୍‌ଜାଣ୍ଡର୍ ଭାରତ ଜୟ କରିବା ଉଦ୍ଦେଶ୍ୟରେ ପ୍ରକାଣ୍ଡ ସେନା ସହିତ ପଞ୍ଜାବରେ ପ୍ରବେଶ ହେଲେ । ସେ ଥିଲେ ପ୍ରାଚୀନ ଗ୍ରୀସ୍‌ଦେଶର ଜଣେ ଚତୁର, ବିବେକୀ ଓ ରଣନିପୁଣ ରାଜା । ପ୍ରଥମରେ ସେ ଏକ କ୍ଷୁଦ୍ର ରାଜ୍ୟରେ ଶାସକ ଥିଲେ, କିନ୍ତୁ ପରେ ନିଜ ଭୁଜବଳରେ ସମଗ୍ର ଗ୍ରୀସ୍‌ଦେଶର ରାଜା ହୋଇ ପାରିଲେ । ଏବଂ ଇଉରୋପ ଓ ଅସିଆର ଅନେକ ରାଜ୍ୟ ଜୟ କଲେ । ଏଣୁ ତାଙ୍କୁ 'ଜଗତ-ବିଜୟୀ' ଆଖ୍ୟା ଦିଆ ଯାଇଥିଲା ।

ସେ ପଞ୍ଜାବରେ ପ୍ରବେଶ କରିବା ପୂର୍ବରୁ, ଅକ୍ସସ୍ ନଦୀ ଉପତ୍ୟକାରେ ଥିବା ବାକ୍‌ଟ୍ରିଆ ଦେଶ ଜିଣିଲେ । ସେଠାରେ ତାଙ୍କ ମନରେ ଭାରତଜୟ-ଇଚ୍ଛା ଜାତହେଲା । ଏଣୁ ସେ ଖ୍ରୀଷ୍ଟପୂର୍ବ ୩୨୬ ସାଲରେ ସସୈନ୍ୟ ହିନ୍ଦୁକୁଶ୍‌ପର୍ବତ ଉତ୍ତୀର୍ଣ୍ଣ ହୋଇ ପଞ୍ଜାବରେ ପ୍ରବେଶ କଲେ ।



ମହାବୀର ଅଲେକ୍ଜଣ୍ଡେର୍

ଖ୍ରୀଷ୍ଟପୂର୍ବ ୩୨୬ରେ ସିନ୍ଧୁ ନଦୀ ପାର ହୋଇ ସେ ତକ୍ଷଶିଳା ନଗର ପ୍ରତି ଅଗ୍ରସର ହେଲେ । ସେଠାର ରାଜା ବରବର ଅଲେକ୍ଜଣ୍ଡେରଙ୍କୁ, ସାଦରେ ଅଭ୍ୟର୍ଥନା କଲେ । କାରଣ ସେତେବେଳେ ସେ ଭାରତର ଅନ୍ୟାନ୍ୟ କେତେ ଜଣ ରାଜାଙ୍କ ସଙ୍ଗେ ଯୁଦ୍ଧରେ ଲାଗିଥିଲେ । ଅଲେକ୍ଜଣ୍ଡେରଙ୍କ ଭାରତ-ଆଗମନ ବେଳେ, ପଞ୍ଜାବ ଅନେକ ଛୋଟ ଛୋଟ ରାଜ୍ୟରେ ପୂର୍ଣ୍ଣ ଥିଲା । ତକ୍ଷଶିଳା ଏହିଳ ଏକ ରାଜ୍ୟର ରାଜଧାନୀ । ସେଠାର ରାଜା ଅଲେକ୍ଜଣ୍ଡେରଙ୍କ ସାହାଯ୍ୟ ପାଇଁ ୫୦୦୦ ସିପାହୀ ପଠାଇଥିଲେ ।

ତକ୍ଷଶିଳାରେ କେତେକ ଦିନ ସୁଖରେ କଟାଇବା ପରେ, ବୀର ଅଲେକ୍ଜଣ୍ଡେର ଓ ତାଙ୍କର ଗ୍ରୀକ୍‌ସୈନ୍ୟ ପୂର୍ବ ଅଡ଼େ ଯାତ୍ରା କରିବାକୁ

ଲାଗିଲେ । ଝେଲମ୍ ଓ ଚନାବ୍ ନଦୀ ମଧ୍ୟରେ ଗୋଟିଏ ରାଜ୍ୟ ଥିଲା । ସେଠା ରାଜାଙ୍କ ନାମ ପୁରୁ । ସେ ଗ୍ରୀକ୍‌ବୀରଙ୍କ ସଙ୍ଗେ ଯୁଦ୍ଧ ଚଳାଇଲେ । ଝେଲମ୍ ନଦୀ ନିକଟରେ ଦୁଇପକ୍ଷ ମଧ୍ୟରେ ଭୟଙ୍କର ଯୁଦ୍ଧ ଘଟିଲା । ପୁରୁ ନିଜ ଅଭୂତ ବୀରତ୍ୱ ଓ ବାହୁ ବଳରେ ଗ୍ରୀକ୍‌ସେନାଙ୍କୁ ଚମକିତ, ମୋହିତ କରିଦେଲେ । କିନ୍ତୁ ଶେଷରେ ସେ ପରାଜିତ ହୋଇ ଗ୍ରୀକ୍-ରାଜାଙ୍କ ହାତରେ ବନ୍ଦୀ ହୋଇ ପଡ଼ିଲେ । ବିବେକୀ ବୀର ଅଲେକ୍-ଜାଣ୍ଡର୍ ପୁରୁଙ୍କ ପ୍ରତି ରାଜୋଚିତ ସମ୍ମାନ ଦେଖାଇ, ତାଙ୍କୁ ତାଙ୍କ ରାଜ୍ୟ ଫେରାଇ ଦେଲେ । ଏହାର ପ୍ରଧାନ କାରଣ, ପୁରୁଙ୍କର ଅତୁଳ ବୀରତ୍ୱ ।

ପରେ ଅଲେକଜାଣ୍ଡର୍ ପୁରୁଙ୍କ ରାଜ୍ୟରୁ ବାହାରି ଆହୁରି ପୂର୍ବଙ୍କୁ ଚାଲି ଆଉ କେତେକ ରାଜ୍ୟ ଜିଣିଲେ । ସେ କ୍ରମେ ରାଜ୍ୟ ପରେ ରାଜ୍ୟ ଜୟ କରି, ଶେଷରେ 'ବିଏସ୍' ନଦୀ ତୀରରେ ଯାଇ ପହଞ୍ଚିଲେ । ସମଗ୍ର ପଞ୍ଜାବ ଜୟରେ ସୁଦ୍ଧା ତାଙ୍କର ତୃପ୍ତି ଆସିଲା ନାହିଁ । ସେ ଆହୁରି ପୂର୍ବଙ୍କୁ ଯିବା ପାଇଁ ବାହାରିଲେ; କିନ୍ତୁ ତାଙ୍କର ସିପାହୀ ଦଳ ସେଥିରେ ରାଜି ହେଲେ ନାହିଁ । ଏଣୁ ଅଲେକ୍‌ଜାଣ୍ଡର୍ ବିଏସ ନଦୀ ନିକଟରୁ ବାହୁଡ଼ିବାକୁ ବାଧ୍ୟ ହେଲେ ।

ସେ ପଞ୍ଜାବ ଛାଡ଼ିବା ପୂର୍ବରୁ, ରାଜା ପୁରୁଙ୍କୁ ତାଙ୍କର ପ୍ରତିନିଧି କରି ଗଲେ । ସେ ନିଜ ଦେଶକୁ ଫେରିବା ବେଳେ ଆଫଗାନିସ୍ଥାନ ବାଟେ ଗଲେ ନାହିଁ, କିନ୍ତୁ ସିନ୍ଧୁ ନଦୀରେ ନୌକା ଚଳାଇ ଆରବ-ସାଗରରେ ଯାଇ ପହଞ୍ଚିଲେ । ସେଠାରୁ ବାହାରି ସେ ଖ୍ରୀଃ ପୂଃ ୩୨୪ ସାଲରେ ପାରସ୍ୟ ଦେଶର ସୁସା ନାମକ ନଗରରେ ଯାଇ ପହଞ୍ଚିଲେ । ତା'ର ଏକ ବର୍ଷ ପରେ ତାଙ୍କର ମୃତ୍ୟୁ ଘଟିଲା ।

ଅଲେକ୍‌ଜଣ୍ଡରଙ୍କ ମରଣ ପରେ, ପଞ୍ଜାବରେ ଗ୍ରୀକ୍‌ମାନଙ୍କ ପ୍ରଭାବ କ୍ରମେ ଲୁପ୍ତ ହେବାକୁ ଲାଗିଲା । ପରେ ପଞ୍ଜାବ ମଗଧସାମ୍ରାଜ୍ୟର ଅନ୍ତର୍ଭୁକ୍ତ ହେଲା ।

## ଚନ୍ଦ୍ରଗୁପ୍ତ:—

ଚନ୍ଦ୍ରଗୁପ୍ତ ଥିଲେ ମଗଧରାଜା ନନ୍ଦଙ୍କ ମୁରାନାମ୍ନୀ ରକ୍ଷିତା ସ୍ତ୍ରୀଙ୍କର ପୁତ୍ର । ପିତାଙ୍କ ଜୀବିତାବସ୍ଥାରେ, କୌଣସି ଗୁରୁତର କାରଣରୁ ସେ ରାଜ୍ୟରୁ ବିତାଡ଼ିତ ହୋଇଥିଲେ । କୌଟିଲ୍ୟ (ଚାଣକ୍ୟ) ନାମକ ଜଣେ ଚତୁର, ଜ୍ଞାନୀ ବ୍ରାହ୍ମଣ ଚନ୍ଦ୍ରଗୁପ୍ତଙ୍କର ସହାୟ ଥିଲେ ।

ଅଲେକ୍‌ଜଣ୍ଡରଙ୍କର ମୃତ୍ୟୁ-ସମ୍ବାଦ ପଞ୍ଜାବରେ ପହଞ୍ଚିବା ମାତ୍ରେ, ସେଠାର ଲୋକେ ଗ୍ରୀକ୍-ରାଜତ୍ୱ ବିରୁଦ୍ଧରେ ବିଦ୍ରୋହୀ ହୋଇ ଉଠିଲେ । ଚନ୍ଦ୍ରଗୁପ୍ତ ଏହି ସୁଯୋଗ ପାଇ, ପଞ୍ଜାବର ବିଦ୍ରୋହୀମାନଙ୍କୁ ଏକତ୍ରିତ କରି ସେଠାର ଗ୍ରୀକ୍-ସେନା ସହିତ ଯୁଦ୍ଧ ଚଳାଇଲେ । ଯୁଦ୍ଧରେ କେତେକ ଗ୍ରୀକ୍ ନିହତ ହେଲେ ଏବଂ ଆଉ କେତେ ଜଣ ପଞ୍ଜାବରୁ ପଳାୟନ କଲେ । ଏପରି, ପଞ୍ଜାବ ବିଦେଶୀ-ରାଜତ୍ୱରୁ ରକ୍ଷା ପାଇଲା ।

ଚନ୍ଦ୍ରଗୁପ୍ତ ମଗଧ-ସିଂହାସନ ପାଇବାକୁ ପ୍ରଗାଢ଼ ଚେଷ୍ଟା କଲେ । ସେ ଚାଣକ୍ୟଙ୍କ ମନ୍ତ୍ରଣାରେ ପଞ୍ଜାବୀ ସୈନ୍ୟଙ୍କୁ ସଙ୍ଗେ ଧରି ଯାଇ ପାଟଳୀପୁତ୍ର ଆକ୍ରମଣ କଲେ । ଶେଷରେ ଚତୁର ଚାଣକ୍ୟଙ୍କ ସାହାଯ୍ୟରେ ସେ ନନ୍ଦବଂଶ ଧ୍ୱଂସ କରି ମଗଧରାଜ୍ୟର ଚକ୍ରବର୍ତ୍ତୀ ହେଲେ । ଚନ୍ଦ୍ରଗୁପ୍ତଙ୍କ ମାତାଙ୍କର ନାମ (ମୁରା) ଅନୁସାରେ, ତାଙ୍କ ବଂଶର ନାମ ରହିଲା "ମୌର୍ଯ୍ୟବଂଶ" । ଚନ୍ଦ୍ରଗୁପ୍ତ ଖ୍ରୀ: ପୂ: ୩୧୬ ସାଲରେ ମଗଧର ସମ୍ରାଟ ହୋଇଥିଲେ ।

ଆଲେକ୍‌ଜାଣ୍ଡ୍ରେରଙ୍କ ମରଣର ଛ'ବର୍ଷ ପରେ, ଗ୍ରୀକ୍ ଦେଶର ପୂର୍ବ ଭାଗ ଅର୍ଥାତ ପଶ୍ଚିମ ଅସିଆରେ ସେଲ୍ୟୁକାସ୍ ନାମକ ଜଣେ ଗ୍ରୀକ ସେନାପତି ଶାସକ ହେଲେ । ସେ ପୁନର୍ବାର ପଞ୍ଜାବ ପ୍ରଦେଶକୁ ଗ୍ରୀକ ରାଜ୍ୟରେ ମିଶାଇବା ଆଶାରେ ଚନ୍ଦ୍ରଗୁପ୍ତଙ୍କ ସଙ୍ଗେ ଯୁଦ୍ଧ କରିବା ନିମନ୍ତେ ସିନ୍ଧୁ ନଦୀ ପାର ହୋଇ ଆସିଲେ ।

ଚନ୍ଦ୍ରଗୁପ୍ତଙ୍କ ସୈନ୍ୟର ଅଭାବ ନ ଥିଲା । ନନ୍ଦରାଜାମାନଙ୍କ ଅଧୀନରେ ବିପୁଳ ସେନା ଥିବା ବିଷୟ ଏଥିପୂର୍ବେ କୁହାଯାଇଛି । ପଞ୍ଜାବରେ ଚନ୍ଦ୍ରଗୁପ୍ତ ଓ ସେଲ୍ୟୁକସଙ୍କ ମଧ୍ୟରେ ଯୁଦ୍ଧ ହୋଇଲା । ସେଲ୍ୟୁକସ୍ ସମ୍ପୂର୍ଣ୍ଣ ପରାସ୍ତ ହୋଇ ସ୍ୱସ୍ଥାନକୁ ବାହୁଡ଼ିବାକୁ ବାଧ୍ୟ ହେଲେ । ଦୁହିଁଙ୍କ ମଧ୍ୟରେ ସନ୍ଧି ସ୍ଥାପିତ ହେଲା । ସେଲ୍ୟୁକସ୍ ତାଙ୍କ ରାଜ୍ୟର କେତେକାଂଶ ଚନ୍ଦ୍ରଗୁପ୍ତଙ୍କୁ ଛାଡ଼ି ଦେଲେ । ଚନ୍ଦ୍ରଗୁପ୍ତ ଏହାର ବିନିମୟରେ ସେଲ୍ୟୁକସଙ୍କୁ ୫୦୦ ହସ୍ତୀ ମାତ୍ର ଦେଇଥିଲେ । ସେ ସେଲ୍ୟୁକସଙ୍କ କନ୍ୟା ହେଲେନାଙ୍କୁ ବିବାହ କଲେ ।

ଖ୍ରୀ: ପୂ: ୩୦୨ ସାଲରେ ସେଲ୍ୟୁକସ୍ ମେଗାସ୍ଥିନିସ୍ ନାମକ ରାଜଦୂତଙ୍କୁ ଚନ୍ଦ୍ରଗୁପ୍ତଙ୍କ ନିକଟକୁ ପଠାଇ ଥିଲେ । ମେଗାସ୍ଥିନିସ୍ କେତେକ ଦିନ ପାଟଳୀପୁତ୍ରରେ ଅବସ୍ଥାନ କରି, ତାହା ସମ୍ବନ୍ଧରେ ବହୁତ କଥା ଲେଖି ଯାଇଛନ୍ତି ।

ଚନ୍ଦ୍ରଗୁପ୍ତଙ୍କ ସମୟରେ ମଗଧ ଗୋଟିଏ ବିଶାଳ ସାମ୍ରାଜ୍ୟ ହୋଇ ଥିଲା । ନିମ୍ନଲିଖିତ ପ୍ରଦେଶ ସବୁ ଏହି ସାମ୍ରାଜ୍ୟର ଅନ୍ତର୍ଭୁକ୍ତ ଥିଲା— ଆଫଗାନିସ୍ଥାନ, ପଞ୍ଜାବ, ଯୁକ୍ତପ୍ରଦେଶ, ବିହାର, କାଥିଆବାଡ଼ ଓ ବଙ୍ଗ । ମହାଶୂରର ଉତ୍ତରଭାଗ ମଧ୍ୟ ମଗଧ ଅଧୀନରେ ଥିଲା ।

ଚନ୍ଦ୍ରଗୁପ୍ତଙ୍କର ପ୍ରଧାନ ମନ୍ତ୍ରୀ ଚାଣକ୍ୟ । ଚାଣକ୍ୟଙ୍କ ପରାମର୍ଶ ଓ ସାହାଯ୍ୟରେହିଁ କ୍ରମେ ମଗଧରାଜ୍ୟର ସୀମା ଓ ଚନ୍ଦ୍ରଗୁପ୍ତଙ୍କ କ୍ଷମତା ବଢ଼ିବାକୁ ଲାଗିଲା । ନନ୍ଦବଂଶର ସେନାବଳ ଅପେକ୍ଷା ମୌର୍ଯ୍ୟବଂଶର ସେନାବଳ ଅଧିକ । ଚନ୍ଦ୍ରଗୁପ୍ତଙ୍କ ସୈନ୍ୟମଧ୍ୟରେ ୯୦୦୦ହସ୍ତୀ ୩୦,୦୦୦ ଅଶ୍ୱାରୋହୀ ଏବଂ ୬୦୦,୦୦୦ ପଦାତିକ ଥିଲେ—ଅନେକ ରଥ ବି ଥିଲା । ପ୍ରତ୍ୟେକ ରଥରେ ୩ଜଣ ଏବଂ ପ୍ରତ୍ୟେକ ହାତୀ ଉପରେ ୪ଜଣ ସୈନିକ ବସି ଯୁଦ୍ଧ ଚଳାଉଥାନ୍ତି । ସିପାହୀମାନେ ରାଜାଙ୍କଠାରୁ ଯଥେଷ୍ଟ ବେତନ ଓ ସାମୟିକ ପୁରସ୍କାର ପାଉଥିଲେ । ସେମାନଙ୍କୁ ବର୍ଚ୍ଛା, ଖଣ୍ଡା, ଧନୁ, ଶର ଇତ୍ୟାଦି ଅସ୍ତ୍ର ଦିଆ ଯାଉଥିଲା । ଚନ୍ଦ୍ରଗୁପ୍ତଙ୍କର ନୌ-ସେନା ମଧ୍ୟ ଥିଲା—ତାହା ଜଳ ଯୁଦ୍ଧରେ ଦରକାର ହେଉଥାଏ । ପ୍ରତ୍ୟେକ ସୈନ୍ୟବିଭାଗର ପରିଚାଳନା ପାଇଁ ରାଜା ଗୋଟିଏ ଗୋଟିଏ **Board** ବା ସଭା ରଖିଥିଲେ ।

ପାଟଳିପୁତ୍ର ମଗଧର ରାଜଧାନୀ । ଏହି ନଗର ପରିଚାଳନା ନିମନ୍ତେ ଚନ୍ଦ୍ରଗୁପ୍ତ ଚାଣକ୍ୟଙ୍କ ପରାମର୍ଶ ଅନୁଯାୟୀ କେତେ ଗୋଟି ସଭା ବା ପଞ୍ଚାୟତ ବସାଇ ଥିଲେ । ସଭାଗୁଡ଼ିକ ନିୟମିତ ଭାବରେ ସ୍ୱ ସ୍ୱ କର୍ତ୍ତବ୍ୟ ପାଳୁଥାନ୍ତି ।

୧ମ ସଭାଟି ନଗରର ଶିଳ୍ପିମାନଙ୍କ ବିଷୟ ବୁଝୁଥିଲା । ୨ୟ ସଭାର ଲୋକେ ବିଦେଶାଗତ ଲୋକଙ୍କର ତତ୍ତ୍ୱ ନେଉଥାନ୍ତି । ୩ୟ ସଭା ନଗରର ଜନ୍ମ ମରଣ ବିବରଣ ଓ ଜନସଂଖ୍ୟା ଲିପି ରଖୁଥିଲା । ୪ର୍ଥ, ପଞ୍ଚମ ଓ ଷଷ୍ଠ ସଭାମାନଙ୍କ ହାତରେ ନଗରର କୃଷି, ବାଣିଜ୍ୟ ବ୍ୟବସାୟ ପରିଚାଳନା ଓ କର-ଆଦାୟ ଭାର ରହିଥିଲା ।

ଚୋରି, ଡକାଇତି, ହାଣ ପିଟ ଇତ୍ୟାଦି ଅନ୍ୟାନ୍ୟ ଓ ଦୁଷ୍ଟ କାର୍ଯ୍ୟ କଲେ ପ୍ରଜାମାନେ ଉପଯୁକ୍ତ ରାଜଦଣ୍ଡ ଭୋଗୁଥିଲେ । ଲୋକଙ୍କ

ଯାତାଯାତର ସୁବିଧା ପାଇଁ ଏବଂ ବାଣିଜ୍ୟ ଚଳାଇବା ନିମନ୍ତେ ରାଜ୍ୟ ମଧ୍ୟରେ ଅନେକ ସଡ଼କ ତିଆରି କରାଯାଇଥିଲା ।

ଚନ୍ଦ୍ରଗୁପ୍ତ ମୌର୍ଯ୍ୟବଂଶ ସ୍ଥାପନ କରି, ତହିଁର ପ୍ରଥମ ରାଜା ହୋଇଥିଲେ । ତାଙ୍କ ରାଜତ୍ୱରେ ମଗଧର ଖ୍ୟାତି ଓ ସୀମା ବଢ଼ିଥିଲା ଏବଂ ବିଶେଷ ଉନ୍ନତି ହୋଇଥିଲା । ଚାଣକ୍ୟଙ୍କ ଯୋଗେ ଚନ୍ଦ୍ରଗୁପ୍ତଙ୍କର ସୁଖ୍ୟାତି । ତାଙ୍କ ଶାସନରେ ପ୍ରଜାସକଳ ଅଧିକ କର ଦେଲେହେଁ, ସୁଖ ଶାନ୍ତିରେ କାଳ କଟାଉ ଥାନ୍ତି । ସମସ୍ତେ ରାଜଭକ୍ତ ଥିଲେ । ଚନ୍ଦ୍ରଗୁପ୍ତଙ୍କ ନାମ ଶୁଣିବା ମାତ୍ରେ ଶତ୍ରୁମାନେ ଭୟରେ ଥରୁ ଥିଲେ । ସେ ପ୍ରାଚୀନ ଭାରତର ଜଣେ ପ୍ରସିଦ୍ଧ ରାଜା । ସେ ନିଜ ପୁତ୍ର ବିନ୍ଦୁସାରଙ୍କ ପାଇଁ ବିପୁଳ ସାମ୍ରାଜ୍ୟ ରଖିଦେଇ ଖ୍ରୀ: ପୂ: ୨୯୮ ସାଲରେ ଇହଧାମରୁ ବିଦାୟ ନେଲେ ।

—:०:०:—

## ଅଶୋକ

ବିନ୍ଦୁସାର ଖ୍ରୀ: ପୂ: ୨୭୩ ପର୍ଯ୍ୟନ୍ତ ରାଜତ୍ୱ କରି ପ୍ରାଣତ୍ୟାଗ କଲେ । ପିତାଙ୍କ ମୃତ୍ୟୁ ପରେ ଅଶୋକ ରାଜା ହେଲେ । ପିତାଙ୍କ ରାଜତ୍ୱ ସମୟରେ ସେ କେତେକ ଦିନ ତକ୍ଷଶିଳା ଓ ଆଉ କେତେକ ଦିନ ଉଜ୍ଜୟିନୀରେ ରାଜପ୍ରତିନିଧି ରୂପେ କାର୍ଯ୍ୟ କରିଥିଲେ । ମଗଧ ସାମ୍ରାଜ୍ୟ ଅତି ବଡ଼ ଥିବାରୁ ତାହା କେତୋଟି ଭାଗରେ ବିଭକ୍ତ ହୋଇଥିଲା; ଏପରି ଗୋଟିଏ ଗୋଟିଏ ବିଭାଗରେ ଜଣେ ଜଣେ ରାଜ ପ୍ରତିନିଧି ନିଯୁକ୍ତ ହୋଇଥିଲେ । ଅଶୋକଙ୍କର ଆଉ କେତେ ଜଣ ବୈମାତ୍ରେୟ ଭାଇ ଥିଲେ; ଏଣୁ ବିନ୍ଦୁସାର ମରିବାର ଅଳ୍ପ କେତେକ ଦିନ ପରେ ଏହି ଭାଇମାନଙ୍କ ମଧ୍ୟରେ ତାଙ୍କର ସିଂହାସନ ନିମନ୍ତେ ବିବାଦ ହୋଇ ଥିଲା । ଶେଷରେ ଅଶୋକ ଏହି ଭାତୃ-ବିବାଦରେ ଜୟଲାଭ କରି ଖ୍ରୀ: ପୂ: ୨୬୯ ସାଲରେ ସିଂହାସନ ଅଧିରୋହଣ କଲେ ।

ଅଶୋକ ଜଣେ ଶାନ୍ତିପ୍ରିୟ ରାଜା । ମାତ୍ର ତାଙ୍କ ରାଜତ୍ୱର ପ୍ରଥମ ଭାଗରେ ମଗଧ ଓ କଳିଙ୍ଗ ଦେଶ ମଧ୍ୟରେ ଗୋଟିଏ ପ୍ରକାଣ୍ଡ ଯୁଦ୍ଧ ହୋଇଥିଲା । ଅଶୋକ ଖ୍ରୀ: ପୂ: ୨୬୧ରେ ପାଟଳୀପୁତ୍ରଠାରୁ ମଗଧର ବିପୁଳ ସୈନ୍ୟ ଧରି ଦକ୍ଷିଣ ଦିଗଅଭିମୁଖେ ଅଗ୍ରସର ହେଲେ । ସେ କଳିଙ୍ଗ ଦେଶରେ ପ୍ରବେଶ କରି ଯୁଦ୍ଧ କଲେ, ଯୁଦ୍ଧରେ ଅନେକ ଲୋକ ପ୍ରାଣ ହରାଇଲେ । କେତେକ କଳିଙ୍ଗବାସୀ ବନ୍ଦୀ ହେଲେ । ଶେଷରେ ଅଶୋକଙ୍କର ଜୟ ହେଲା, କିନ୍ତୁ ଯୁଦ୍ଧଭୂମିର କରୁଣ ଦୃଶ୍ୟ, ବନ୍ଦୀମାନଙ୍କ ଦୁର୍ଦ୍ଦଶା ଦେଖି ପୁଣି ମୃତ ସୈନ୍ୟଙ୍କ ବନ୍ଧୁଜନମାନଙ୍କ ବିକଳ ଆର୍ତ୍ତନାଦ ଶ୍ରବଣ କରି ଅଶୋକଙ୍କ ହୃଦୟ ଦୟାରେ ପୂର୍ଣ୍ଣ ହେଲା । ସେ ସେହି ଦିନଠାରୁ ଆଉ କେବେ ଯୁଦ୍ଧ କଲେ ନାହିଁ । ଏହି ଘଟଣାରେ ତାଙ୍କ ମନର ଯେଉଁ ପରିବର୍ତ୍ତନ ଘଟିଲା, ତାହା ସେ ଏକ ପ୍ରସ୍ତରରେ ଲେଖାଇ ଅଛନ୍ତି । ସେ ଏହି ଦୟାରେ ବିଭୋର ହୋଇ, ହିଂସାଜନକ କାର୍ଯ୍ୟକୁ ଘୃଣା କରି, ଅହିଂସା ଧର୍ମର ମହାତ୍ମ୍ୟ ଅନୁଭବ କରି ବୁଦ୍ଧଦେବଙ୍କ ଜଗଦ୍‌ବିଖ୍ୟାତ ଧର୍ମ ଅବଲମ୍ବନ କଲେ ।

ସେ ସେହି ଦିନଠାରୁ ଆଉ କେବେ ପରଦେଶ ଜୟ କରିବାକୁ ଯୁଦ୍ଧ କରିବେ ନାହିଁ ବୋଲି ପ୍ରତିଜ୍ଞା କଲେ । ସେହି ଦିନଠାରୁ ତାଙ୍କ ରାଜତ୍ୱରେ ଅହିଂସା-ବାଦ-ପ୍ରଚାର ଓ ବୁଦ୍ଧଦେବଙ୍କ ଧର୍ମ ପ୍ରଚାରର ଆରମ୍ଭ ହେଲା । ଅଶୋକ ଇତିପୂର୍ବେ ଜଣେ ହିନ୍ଦୁ ଥିଲେ, ସେ ସାଧାରଣ ହିନ୍ଦୁ ପରି ମାଂସାହାର କରୁଥିଲେ । ତାଙ୍କର ମୃଗୟାଦି ବ୍ୟସନ ଥିଲା, ନାଚ ଗୀତ ପ୍ରଭୃତି କୌତୁକରେ ସେ ମଧ୍ୟ ଯୋଗଦାନ କରୁଥିଲେ । ମଦ୍ୟପାନ କରିବାକୁ ବି ସେ କୁଣ୍ଠିତ ନ ଥିଲେ । ମାତ୍ର କଳିଙ୍ଗ ଯୁଦ୍ଧ ପରେ ତାଙ୍କ ଜୀବନର ଗତି ସମ୍ପୂର୍ଣ୍ଣ ପରିବର୍ତ୍ତିତ ହୋଇଗଲା । ସର୍ବଦା ଧର୍ମ କାର୍ଯ୍ୟରେ ରତ ହୋଇ ମାଂସାହାର, ମଦ୍ୟପାନ ଓ ମୃଗୟା ବ୍ୟସନ ତ୍ୟାଗ କରି ବୌଦ୍ଧ ସନ୍ନ୍ୟାସୀ ପରି ଅତି ପବିତ୍ର ଭାବରେ ଜୀବନ ଯାପନ

କରିବାକୁ ଲାଗିଲେ । ପୁଣି ବୌଦ୍ଧ ଧର୍ମର ବହୁଳ ପ୍ରଚାରକୁ ଜୀବନର ପ୍ରଧାନ ଓ ସର୍ବପ୍ରଥମ ବ୍ରତ ରୂପେ ଗ୍ରହଣ କଲେ ।

ଅଶୋକ ବୌଦ୍ଧଧର୍ମ ପ୍ରଚାର ନିମନ୍ତେ ଦୁଇ ଗୋଟି ଉପାୟ ଅବଲମ୍ବନ କରିଥିଲେ । ବୌଦ୍ଧ ମତାବଲମ୍ବୀ ସନ୍ନ୍ୟାସୀ ଓ ଶ୍ରାମଣମାନଙ୍କୁ ନାନା ସ୍ଥାନରେ ଧର୍ମପ୍ରଚାର ନିମନ୍ତେ ପଠାଉ ଥିଲେ । ରାଜ୍ୟର ନାନାସ୍ଥାନରେ ପଥର ଉପରେ ଲମ୍ବା ଉଚ୍ଚସ୍ତମ୍ଭ ନିର୍ମାଣ କରି ସେହି ସ୍ତମ୍ଭମାନଙ୍କରେ ଅନେକ ଧର୍ମୋପଦେଶ ଖୋଦିତ କରାଉ ଥିଲେ । ଏଗୁଡ଼ିକ ସଂସ୍କୃତ ଭାଷାରେ ନ ହୋଇ ପାଲି ଭାଷାରେ ଲେଖାଯାଇ ଥିଲା । କାରଣ ପାଲି ସଂସ୍କୃତ ଅପେକ୍ଷା ଅତି ସହଜ ଓ ବହୁତ ଲୋକଙ୍କର ବୋଧଗମ୍ୟ । ଏପରି ଗୋଟିଏ ପଥର ଗଞ୍ଜାମଜିଲ୍ଲାର ପୁରୁଷୋତ୍ତମପୁର ନିକଟରେ ଅଛି । ଏପରି ଅନେକ ପଥର ଓ ସ୍ତମ୍ଭଲିପି ଦେଶର ନାନାସ୍ଥାନରେ ରଖା ଯାଇଥିଲା । ଏହି ଲିପି ପଢ଼ିଲେ ବୌଦ୍ଧଧର୍ମ ଅହିଂସା-ବାଦ ଓ ଲୋକହିତରେ ଅଶୋକଙ୍କର ଗଭୀର ଅନୁରାଗ ସ୍ପଷ୍ଟ ଜଣାଯାଏ । ଭିନ୍ନ ଭିନ୍ନ ସମୟରେ ବିଭିନ୍ନ ଘଟଣାକୁ ଲକ୍ଷ୍ୟ କରି ସେ ଏପରି ଧର୍ମୋପଦେଶ ଲେଖାଉ ଥିଲେ । କେତେକ ପଥରରେ ନିମ୍ନଲିଖିତ ଉପଦେଶମାନ ଲେଖା ଅଛି— ପିତାମାତାଙ୍କୁ ସମ୍ମାନ କରିବ । ସବୁ ପ୍ରାଣିଙ୍କଠାରେ ଦୟା ରଖିବ । ସତ୍ୟ କହିବା ପ୍ରଧାନ ଧର୍ମ, ଏହି ଧର୍ମହିଁ ଜୀବନରେ ପାଳନ କରିବାକୁ ହେବ । ଗୁରୁଙ୍କ ପ୍ରତି ଭକ୍ତି ଦେଖାଇବ ଓ ବନ୍ଧୁମାନଙ୍କୁ ଉପଯୁକ୍ତ ମର୍ଯ୍ୟାଦା କରିବ ।

ଅଶୋକ ଧର୍ମପ୍ରଚାର ନିମନ୍ତେ ବିଦେଶକୁ ବହୁ ଲୋକଙ୍କୁ ପଠାଇ ଥିଲେ । ସେମାନେ ବର୍ମା, ଲଙ୍କା, ତିବ୍ବତ, ଆଫ୍ରିକା ଓ ଇଯୁରୋପର ଗ୍ରୀକ୍ ଦେଶକୁ ଯାଇ ବୁଦ୍ଧଦେବଙ୍କ ଧର୍ମ ପ୍ରଚାର କଲେ । ସେଠାର ରାଜା ଓ ପ୍ରଜାମାନେ ଏହି ମତ ଗ୍ରହଣ କଲେ । ଏବେ ମଧ୍ୟ ବର୍ମା, ଲଙ୍କା, ତିବ୍ବତ ବାସିଙ୍କର ବୌଦ୍ଧମତ ଅଟେ ।

ଅଶୋକ ଧର୍ମ ନିମନ୍ତେ ଓ ରାଜ୍ୟର ମଙ୍ଗଳ ନିମନ୍ତେ ବହୁତ ପରିଶ୍ରମ କରୁଥିଲେ । ସେ ସର୍ବଦା କର୍ମବୀର । ନିଜେ ରାଜ୍ୟର ସକଳ ବିଷୟ ବୁଝୁଥିଲେ; କୌଣସି ଗୁରୁତର ବା ଆବଶ୍ୟକ କାର୍ଯ୍ୟ ହେଲାରେ ପକାଇ ରଖୁ ନ ଥିଲେ । ନିଜର ଯାହା କର୍ତ୍ତବ୍ୟ ତାହା ସୁଚାରୁରୂପେ କରୁଥିଲେ । ସେ ବେଶ୍ ବୁଝିଥିଲେ ଯେ ପ୍ରଜାଙ୍କ ସୁଖ ଉପରେ ତାଙ୍କର ସୁଖ ନିର୍ଭର କରେ; ପ୍ରଜାଙ୍କ ସନ୍ତୋଷହିଁ ତାଙ୍କର ସନ୍ତୋଷ । ଏଣୁ ସେ ସର୍ବଦା ପ୍ରଜାଙ୍କ ହିତ ନିମନ୍ତେ ଯଥାସାଧ୍ୟ ଚେଷ୍ଟା କରୁଥିଲେ । ଏପରି କି ସମୟେ ସମୟେ ସେ ନିଜର ସୁଖ ସୁବିଧା ମଧ୍ୟ ତ୍ୟାଗ କରି ରାଜକାର୍ଯ୍ୟ ଭଲରୂପେ ଦେଖୁଥିଲେ ।



ମୌର୍ଯ୍ୟ-ସାମ୍ରାଜ୍ୟ ଅଶୋକଙ୍କ ସମୟରେ ବିସ୍ତୃତିରେ ଊଣା ହୋଇ ନ ଥିଲା । ବରଂ କଳିଙ୍ଗ ମିଶିବାରୁ ତାହାର ଆୟତନ ବଢ଼ିଥିଲା । ଦକ୍ଷିଣରେ ସୁଦୂର ମହୀଶୂର, ଉତ୍ତରରେ କାଶ୍ମୀର ଓ ନେପାଳ; ପୂର୍ବରେ ଆସାମ ଓ ପଶ୍ଚିମରେ କାବୁଲ ଯାଏଁ ଏହା ବ୍ୟାପ୍ତ ହୋଇଥିଲା ।

ଅଶୋକଙ୍କ ସମୟରେ ମଧ୍ୟ ରାଜପ୍ରତିନିଧିଗଣ ବିଭିନ୍ନ ସ୍ଥାନରେ ରହି ଶାସନ ଚଳାଉଥିଲେ । ରାଜା ନିଜେ ପାଟଳିପୁତ୍ରରେ ରହୁଥିଲେ । ସାଧାରଣତଃ ରାଜବଂଶର ଲୋକେ କେବଳ ପ୍ରତିନିଧି ସ୍ୱରୂପ ନିଯୁକ୍ତ କରାଯାଉଥିଲେ । ପଞ୍ଜାବ୍ ଦେଶର ପ୍ରତିନିଧି ତକ୍ଷଶିଳାରେ ରହୁଥିଲେ । ମାଳବ ଦେଶର ପ୍ରତିନିଧି ଉଜ୍ଜୟିନୀରେ ଏବଂ ଦକ୍ଷିଣ ରାଜ୍ୟର ପ୍ରତିନିଧି ସୁବର୍ଣ୍ଣଗିରି ନାମକ ନଗରରେ ବାସ କରୁଥିଲେ ।

ଅଶୋକଙ୍କର ଅନେକ ପ୍ରଧାନ ମନ୍ତ୍ରୀ ଥିଲେ । ସେମାନଙ୍କ ଉପଦେଶ ଓ ମନ୍ତ୍ରଣାରେ ରାଜ୍ୟ ଚଳୁଥିଲା । ଚନ୍ଦ୍ରଗୁପ୍ତଙ୍କ ସମୟରେ ଯେପରି ରାଜତ୍ୱ ହେଉଥିଲା, ଅଶୋକଙ୍କ ସମୟରେ ମଧ୍ୟ ସେହିପରି ହେଲା । ମାତ୍ର ବୌଦ୍ଧଧର୍ମ ପ୍ରଚାର ଅଶୋକଙ୍କ ରାଜତ୍ୱର ବିଶେଷତ୍ୱ । ସେ ଧର୍ମବିଭାଗରେ ମଧ୍ୟ ମନ୍ତ୍ରୀ ନିଯୁକ୍ତ କରିଥିଲେ । ଏମାନେ ଧର୍ମପ୍ରଚାର କାର୍ଯ୍ୟ ଭଲଭାବରେ ହେଉଛି କି ନାହିଁ, ତାହା ଦେଖୁଥିଲେ । କେହି ଯେପରି ରାଜାଙ୍କ ବିରୁଦ୍ଧରେ ହିଂସା ନ କରେ, ତାହା ମଧ୍ୟ ଦେଖୁଥିଲେ ।

ଅଶୋକଙ୍କ ରାଜତ୍ୱରେ ସମସ୍ତେ ତୃପ୍ତ ଥିଲେ । ଏହାର ମୂଳ କାରଣ ହେଉଛି, ତାଙ୍କର ଜୀବଦୟା । ସେ ନିଜେ ବୌଦ୍ଧମତାବଲମ୍ବୀ ହୋଇଥିଲେ ସୁଦ୍ଧା ଅନ୍ୟ ଧର୍ମକୁ ଘୃଣା କରୁ ନ ଥିଲେ । ମାତ୍ର ଦେଶରୁ ପ୍ରାଣିହିଂସା ଉଠାଇବାକୁ ସେ ବହୁତ ଯତ୍ନ କରିଥିଲେ । ସେ ଦରିଦ୍ର ଲୋକଙ୍କୁ ଖାଦ୍ୟ ଓ ବସ୍ତ୍ର ପ୍ରଦାନ କରୁଥିଲେ । ମାର୍ଗରେ ପଥିକମାନଙ୍କ ପାଇଁ ଛାୟା ହେବ ବୋଲି ଗଛ ଲଗାଇଥିଲେ । ସେ ବହୁତ ପୁଷ୍କରିଣୀ ଖୋଳାଇଥିଲେ ଏବଂ ମାର୍ଗର ସ୍ଥାନେ ସ୍ଥାନେ ପାନ୍ଥଶାଳା ନିର୍ମାଣ କରାଇଥିଲେ ।

ରୁଗ୍ଣ ଲୋକଙ୍କ ନିମନ୍ତେ ଚିକିତ୍ସା ପାଇଁ ଚେର ମୂଳ ଓ ଔଷଧ ରାଜ୍ୟରେ ବିତରଣ କରୁଥିଲେ । ରୁଗ୍ଣ ଜନ୍ତୁମାନଙ୍କର ରୋଗ ଭଲ କରିବାକୁ ବି ସେ ଧନବ୍ୟୟ କରୁଥିଲେ ।



ଅଶୋକ ତାଙ୍କ ଗୁରୁ ଉପଗୁପ୍ତ ସଙ୍ଗରେ କେତେକ ବୌଦ୍ଧ ତୀର୍ଥ ସ୍ଥାନକୁ ଯାଇଥିଲେ । ପୁଣି ବୁଦ୍ଧଦେବଙ୍କ ଜନ୍ମ ସ୍ଥାନରେ ସ୍ମୃତିଚିହ୍ନସ୍ୱରୂପ ଗୋଟିଏ ସ୍ତମ୍ଭ ନିର୍ମାଣ କରାଇଥିଲେ । ସେହି ସ୍ତମ୍ଭଟି ବର୍ତ୍ତମାନ ମଧ୍ୟ ରହିଅଛି । ଖ୍ରୀଷ୍ଟ-ପୂର୍ବ ୨୪୦ ସାଲରେ ଅଶୋକ ନିଜେ ଜଣେ ବୌଦ୍ଧ ସନ୍ନ୍ୟାସୀ ହୋଇଗଲେ । ସେ ରାଜଭୂଷଣ ପରିତ୍ୟାଗ କରି ପୀତବସନ ପରି-ଧାନ କଲେ । ଏହାର ଅଠବର୍ଷ ପରେ ସେ ପ୍ରାଣତ୍ୟାଗ କଲେ ।

—:୦:—

## ଅଶୋକଙ୍କ ପରେ ଭାରତବର୍ଷର ଅବସ୍ଥା

ମୌର୍ଯ୍ୟବଂଶ ଖ୍ରୀଷ୍ଟପୂର୍ବ ୧୮୪ ଅବ୍ଦ ପର୍ଯ୍ୟନ୍ତ ମଗଧଦେଶରେ ରାଜତ୍ୱ କରିଥିଲେ । ଉକ୍ତ ବଂଶରେ ଅଶୋକଙ୍କ ଉତ୍ତାରୁ କେହିହେଲେ ବିଖ୍ୟାତ ରାଜା ନ ଥିଲେ । ଦୁର୍ବଳ ରାଜାମାନଙ୍କ ହସ୍ତରେ ମଗଧର କ୍ଷମତା କ୍ଷୀଣ ହେଲା; ଶେଷରେ ଅନ୍ୟ ଲୋକେ ଆସି ମଗଧ ରାଜ୍ୟ ଅଧିକାର କଲେ । ମୌର୍ଯ୍ୟ ବଂଶର ଶେଷ ରାଜା ତାଙ୍କ ସେନାପତି ପୁଷ୍ୟ-

ମିତ୍ରଙ୍କ ଦ୍ୱାରା ନିହତ ହେଲେ । ଏଠାରେ ମୌର୍ଯ୍ୟବଂଶ ଲୋପ ପାଇଲା ।

ପୁଷ୍ୟମିତ୍ର ଖ୍ରୀ: ପୂ: ୧୮୪ ରେ ମଗଧର ରାଜା ହେଲେ । ତାଙ୍କର ହିନ୍ଦୁ ମତ, ଏଣୁ ସେ ଗୋଟିଏ ଅଶ୍ୱମେଧ ଯଜ୍ଞ କରାଇଥିଲେ । ସେ ଖ୍ରୀ: ପୂ: ୧୪୮ ସାଲରେ ପ୍ରାଣତ୍ୟାଗ କଲେ । ତାଙ୍କ ପରେ ଆଉ କେତେଜଣ ରାଜା ହେଲେ । ପୁଷ୍ୟମିତ୍ରଙ୍କ ବଂଶଧରମାନେ ଖ୍ରୀ: ପୂ: ୭୨ ଅବ୍ଦ ପର୍ଯ୍ୟନ୍ତ ମଗଧ ପାଳନ କଲେ, ମାତ୍ର ଶେଷରେ ମଗଧ, ବାସୁଦେବ ନାମକ ଜଣେ ବ୍ରାହ୍ମଣଙ୍କର ଅଧୀନ ହେଲା । ବାସୁଦେବଙ୍କ ପରେ ଆଉ ତିନି ଜଣ ରାଜା ହୋଇଥିଲେ । ମାତ୍ର ସେମାନଙ୍କ ରାଜତ୍ୱରେ ମଗଧର କୌଣସି ଉନ୍ନତି ହୋଇନାହିଁ ।

ଅନ୍ଧ୍ରଦେଶ ଚନ୍ଦ୍ରଗୁପ୍ତଙ୍କ ସମୟଠାରୁ ମଗଧ ଅଧୀନରେ ଥିଲା । ଅନ୍ଧ୍ରମାନେ ମଗଧ ସମ୍ରାଟଙ୍କୁ ମାନିକରି ରହିଥିଲେ । ମାତ୍ର ଦୁର୍ବଳ ରାଜାମାନଙ୍କ ସମୟରେ ଏମାନେ ସ୍ୱାଧୀନ ହୋଇ ମଗଧ ରାଜତ୍ୱରୁ ମୁକ୍ତ ହେଲେ । ଅନ୍ଧ୍ରଦେଶ ଗୋଦାବରୀ ଠାରୁ କୃଷ୍ଣା ନଦୀ ପର୍ଯ୍ୟନ୍ତ ବ୍ୟାପି-ଥିଲା । ମଗଧ ସାମ୍ରାଜ୍ୟର ଅଧୋଗତି ସଙ୍ଗେ ସଙ୍ଗେ ଅନ୍ଧ୍ରଦେଶର ଆୟତନ ଅନେକ ଦୂର ବଢ଼ିଲା । ପଶ୍ଚିମ ଓ ନାସିକ ପର୍ଯ୍ୟନ୍ତ ଅନ୍ଧ୍ର ରାଜାମାନଙ୍କର କ୍ଷମତା ବିସ୍ତାରିତ ହେଲା । ଖ୍ରୀ: ପୂ: ୨୭ରେ ମଗଧରାଜ୍ୟ ମଧ୍ୟ ଅନ୍ଧ୍ରଦେଶର ଅନ୍ତର୍ଗତ ହେଲା । ଆଉ କେତେକାଳ ପରେ ଆର୍ଯ୍ୟାବର୍ତ୍ତର ଆଉ କେତେ ରାଜ୍ୟ ଅନ୍ଧ୍ର ରାଜ୍ୟରେ ମିଶିଲା । ଅନ୍ଧ୍ର-ମାନେ ପ୍ରାୟ ୪୦୦ ବର୍ଷ ଯାଏଁ ଆର୍ଯ୍ୟାବର୍ତ୍ତ ଓ ଦାକ୍ଷିଣାତ୍ୟରେ ନିଜର କ୍ଷମତା ଓ ରାଜତ୍ୱ ଚଳାଇ ଥିଲେ ।

ମଗଧ ରାଜାମାନଙ୍କର ଦୁର୍ବଳତା ଓ ମଗଧ ସାମ୍ରାଜ୍ୟର କ୍ଷମତା ଊଣା ହେବାର ଦେଖି ବୈଦେଶିକମାନେ ମଧ୍ୟ ଭାରତବର୍ଷର କେତେ ସ୍ଥାନ ଆକ୍ରମଣ କରି ରାଜ୍ୟ ସ୍ଥାପନ କରିବାକୁ ଲାଗିଲେ । ଏମାନେ ମଧ୍ୟ-ଏସିଆ ଦିଗରୁ ହିନ୍ଦୁକୁଶ ପର୍ବତ ବାଟେ ଆସି ଭାରତରେ ପ୍ରବେଶ

କଲେ । ସେମାନେ ଆସିବାର ଆଉ ଗୋଟିଏ କାରଣ ଅଛି । ଅନ୍ୟ ଜାତିମାନେ ଏମାନଙ୍କ ରାଜ୍ୟ ଆକ୍ରମଣ କଲେ, ଏଣୁ ଏମାନେ ନିଜର ରାଜ୍ୟ ତ୍ୟାଗ କରିବାକୁ ବାଧ୍ୟ ହେଲେ ।

ଭାରତବର୍ଷର ଉତ୍ତର-ପଶ୍ଚିମ ପ୍ରାନ୍ତରେ ବାକ୍‌ଟ୍ରିଆ ନାମରେ ଗୋଟିଏ ଦେଶ ଥିଲା । ସେଠାରେ ଗ୍ରୀକ୍‌ମାନେ ରାଜତ୍ୱ କରୁଥିଲେ । ଏହା ଛଡ଼ା ଅନ୍ୟତ୍ର କେତେ ଗ୍ରୀକ୍ ରାଜ୍ୟ ମଧ୍ୟ ସ୍ଥାପିତ ହୋଇଥିଲା । କାବୁଲର ମୀନାଣ୍ଡର ନାମକ ଜଣେ ଗ୍ରୀକ୍ ରାଜା ରାଜ୍ୟ-ଜୟ କାମନାରେ ଭାରତବର୍ଷକୁ ଆସି କାଥିଆବାଡ଼ ଓ ମଗଧ ରାଜ୍ୟ ସମୀପବର୍ତ୍ତୀ କେତେକ ସ୍ଥାନ ଜୟ କରି ପାରିଲେ । କିନ୍ତୁ ପାଟଳୀପୁତ୍ର ଆକ୍ରମଣ କଲେ ନାହିଁ ।

ଏହି ସମୟରେ ଶକ ନାମରେ ଆଉ ଦଳେ ଲୋକ ସିନ୍ଧୁ-ଦେଶରେ ବାସ କରୁଥିଲେ । ସେମାନଙ୍କ ରାଜା ଓ ଅନ୍ଧ୍ର ରାଜା ମଧ୍ୟରେ ଯୁଦ୍ଧ ହୋଇଥିଲା ।

ପହ୍ଲବମାନେ ପାରସ୍ୟ ଦେଶରୁ ଆସି ଦକ୍ଷିଣ ଭାରତରେ ପ୍ରବେଶ କରିଥିଲେ । ଏମାନେ ଦକ୍ଷିଣରେ ଗୋଟିଏ ସ୍ୱତନ୍ତ୍ର ରାଜ୍ୟ ସ୍ଥାପନ କଲେ । ଏହି ରାଜ୍ୟର ଦୁଇଟି ପ୍ରଧାନ ସ୍ଥାନ କାଞ୍ଚୀ ଓ ବେଙ୍ଗୀ । ଏମାନେ ଠିକ୍ ଶକମାନେ ଆସିବା ସମୟରେ କେବଳ ଆସି ଥିଲେ । ପହ୍ଲବମାନେ ହିନ୍ଦୁ ହୋଇ ଯାଇଥିଲେ । ଏମାନଙ୍କ ରାଜ୍ୟ ଖ୍ରୀଷ୍ଟ ପର ଦଶମ ଶତାବ୍ଦୀ ପର୍ଯ୍ୟନ୍ତ ଥିଲା ।

ଶକମାନଙ୍କୁ ଯେଉଁ ଜାତି ଆକ୍ରମଣ କରି ଦେଶରୁ ଘଉଡ଼ି ଥିଲେ, ସେହି ଜାତିର ନାମ ୟୁଚି । ଏମାନେ ପ୍ରଥମେ ମଧ୍ୟ-ଆସିଆରେ ରହି ଗୋଟିଏ ରାଜ୍ୟ ସ୍ଥାପନ କଲେ । କ୍ରମେ ଏହି ରାଜ୍ୟ ଆକସସ୍ ନଦୀଠାରୁ ପୂର୍ବରେ ଅନେକ ଦୂରଯାଏ ବଢ଼ିବାକୁ ଲାଗିଲା । ସେମାନେ

ଅଧିକ ଶକ୍ତିଶାଳୀ ହୋଇ କେତେକ କାଳ ପରେ ବାକ୍ଟ୍ରିୟାର ଗ୍ରୀକ-ମାନଙ୍କୁ ପରାଜୟ କଲେ । ୟୁଚି ଜାତିର ଆଉ ଗୋଟିଏ ଉପଜାତି ଥିଲା; ତାହା କୁଷାନ । କାଡ୍‌ଫିସିସ୍ ନାମକ ଜଣେ କୁଷାନ ଏହି ନୂତନ ରାଜ୍ୟର ରାଜା ହେଲେ । କ୍ରମେ ୟୁଚିମାନେ ଅନ୍ୟାନ୍ୟ ଦେଶ ଜୟ କରିବାକୁ ଲାଗିଲେ । ସେମାନେ ହିନ୍ଦୁକୁଶ ପର୍ବତ ଓ କାଶ୍ମୀର ମଧ୍ୟ ଜୟ କଲେ । ପୁଣି ଦ୍ୱିତୀୟ କାଡ୍‌ଫିସେସ୍‌ଙ୍କ ସମୟରେ ୟୁଚିମାନେ ଭାରତବର୍ଷ ଆକ୍ରମଣ କଲେ । ମାଳବ, ସିନ୍ଧୁ ଓ କୋଙ୍କାନ୍ ସେମାନଙ୍କର କରଗତ ହେଲା । ଅକ୍‌ସସ୍‌ଠାରୁ କୋଙ୍କାନ ପର୍ଯ୍ୟନ୍ତ କୁଷାନ ଦେଶ ବିସ୍ତାରିତ ହୋଇଥିଲା ।

ଖ୍ରୀଷ୍ଟ ପର ୧୨୦ ରେ ଦ୍ୱିତୀୟ କାଡ୍‌ଫିସିସ୍‌ଙ୍କ ମୃତ୍ୟୁ ପରେ କନିଷ୍କ କୁଷାନମାନଙ୍କର ରାଜା ହେଲେ । ସେ ପୁରୁଷପୁରରେ ରାଜଧାନୀ କରି ସେଠାରେ ରହିଲେ । ତାଙ୍କ ସମୟରେ କୁଷାନ ରାଜ୍ୟର ସୀମାବୃଦ୍ଧି ହୋଇଥିଲା । କନିଷ୍କ ଅଶୋକଙ୍କ ପରି ବୌଦ୍ଧମତ ଗ୍ରହଣ କରିଥିଲେ; ବୁଦ୍ଧଦେବଙ୍କଠାରେ ତାଙ୍କର ଅଚଳା ଭକ୍ତି ଥିଲା; ସେ ବୌଦ୍ଧଧର୍ମ ପ୍ରଚାର ନିମନ୍ତେ ଅନେକ ଚେଷ୍ଟା କରିଥିଲେ । ତାହାଙ୍କ ସମୟରେ ବୌଦ୍ଧ ଧର୍ମରେ କିଞ୍ଚିତ୍ ପରିବର୍ତ୍ତନ ଘଟିଲା, ବୌଦ୍ଧମାନେ ଦୁଇଭାଗରେ ବିଭକ୍ତ ହେଲେ । ପ୍ରାଚୀନ ବୌଦ୍ଧମତର ନାମ ହୀନାୟନ ଓ ନୂତନ ମତର ନାମ ମହାୟନ ହୋଇଥିଲା । କନିଷ୍କ ମହାୟନ ଧର୍ମ ଗ୍ରହଣ କରିଥିଲେ ପୁଣି ଏହି ଧର୍ମ ପ୍ରଚାର କରିବାକୁ ତିବ୍ବତ୍, ଚୀନ ପ୍ରଭୃତି ଦେଶକୁ ପ୍ରଚାରକମାନଙ୍କୁ ପଠାଇଥିଲେ । ଏଣୁ ଦକ୍ଷିଣ ଦେଶର ଲୋକେ ହୀନାୟନ ମତ ଗ୍ରହଣ କରିଅଛନ୍ତି ଏବଂ ଉତ୍ତର ଦେଶର ଲୋକେ ଦ୍ୱିତୀୟ ମତ ଗ୍ରହଣ କରିଅଛନ୍ତି ।

କନିଷ୍କଙ୍କ ରାଜସଭାରେ ଚରକ ନାମକ ଜଣେ ଆୟୁର୍ବେଦ ପଣ୍ଡିତ ଥିଲେ । ସେ ଆୟୁର୍ବେଦ ସମ୍ବନ୍ଧେ ଗୋଟିଏ ଅତି ଉପାଦେୟ ପୁସ୍ତକ

ଲେଖିଅଛନ୍ତି । କନିଷ୍କ ଖ୍ରୀଷ୍ଟୀୟ ୧୬୬ ସାଲରେ ପ୍ରାଣତ୍ୟାଗ କଲେ । ତାଙ୍କ ପରେ କୁଷାନ ରାଜ୍ୟ ଦୁର୍ବଳ ହୋଇଗଲା, କ୍ରମେ କ୍ରମେ ତାହା ଗୋଟିଏ ଅତି କ୍ଷୁଦ୍ର ରାଜ୍ୟ ହୋଇ କେତେକାଳଯାଏଁ ରହିଲା ।

—:○:—

## ଗୁପ୍ତରାଜ୍ୟ

ଅଶୋକଙ୍କ ମୃତ୍ୟୁର ଅନେକ ବର୍ଷ ଉତ୍ତାରୁ ଭାରତବର୍ଷରେ କୌଣସି ବଡ଼ ରାଜ୍ୟ ନ ଥିଲା; ମଗଧ ସାମ୍ରାଜ୍ୟ ବିନାଶ ହୋଇଥିଲା । ପୁନର୍ବାର ଭାରତବର୍ଷ ଛୋଟ ଛୋଟ ରାଜ୍ୟରେ ବିଭକ୍ତ ହେଲା—କୌଣସି ଗୋଟିଏ କ୍ଷମତାଶାଳୀ ରାଜବଂଶର ଛତ୍ର ତଳେ ନ ରହି, ବିଭିନ୍ନ ରାଜ୍ୟରେ ବିଭକ୍ତ ହୋଇ ପ୍ରାୟ ୫୦୦ ବର୍ଷ କାଳ ସେହିପରି ରହିଲା । ଖ୍ରୀଷ୍ଟପର ପ୍ରଥମ ଓ ଦ୍ୱିତୀୟ ଶତାବ୍ଦୀରେ କୁଷାନରାଜ୍ୟ ସ୍ଥାପିତ ହୋଇଥିଲା, କିନ୍ତୁ କନିଷ୍କଙ୍କ ପରେ ଏ ରାଜ୍ୟଟି ମଧ୍ୟ ଦୁର୍ବଳ ଓ କ୍ଷୀଣ ହେବାକୁ ଲାଗିଲା, ତୃତୀୟ ଶତାବ୍ଦୀରେ ଭାରତର ବେଶି ଅବନତି ଘଟିଥିଲା । ଚତୁର୍ଥ ଶତାବ୍ଦୀର ପ୍ରଥମ ଭାଗରେ ଭାରତବର୍ଷରେ ଆଉ ଗୋଟିଏ ନୂତନ ସାମ୍ରାଜ୍ୟ ସ୍ଥାପିତ ହେଲା । ଏହି ସାମ୍ରାଜ୍ୟର ପ୍ରଥମ ରାଜା ଚନ୍ଦ୍ରଗୁପ୍ତ । ଚନ୍ଦ୍ରଗୁପ୍ତଙ୍କ ନାମାନୁସାରେ ଏହି ରାଜ୍ୟକୁ ଗୁପ୍ତରାଜ୍ୟ ବୋଲି କହନ୍ତି । ଚନ୍ଦ୍ରଗୁପ୍ତ ୩୦୮ ସାଲରେ ଲିଚ୍ଛାବି ରାଜକନ୍ୟା କୁମାରୀଦେବୀଙ୍କୁ ବିବାହ କରିଥିଲେ । ଲିଚ୍ଛାବି ସମ୍ବନ୍ଧ ହେତୁରୁ ଚନ୍ଦ୍ରଗୁପ୍ତଙ୍କର ଅନେକ ଲାଭ ହୋଇଥିଲା । ଲିଚ୍ଛାବିମାନେ ଗୋଟିଏ କ୍ଷମତାଶାଳୀ ଜାତି । ସେମାନେ ଚନ୍ଦ୍ରଗୁପ୍ତଙ୍କୁ ସାହାଯ୍ୟ କଲେ, ତେଣୁ ଚନ୍ଦ୍ରଗୁପ୍ତ କେତେକ ରାଜ୍ୟ ଜୟ କରି ଗୋଟିଏ ବୃହତ୍ ରାଜ୍ୟ ସ୍ଥାପନ କରିଥିଲେ । ବର୍ତ୍ତମାନ ସମୟରେ ତିରୁହତ୍, ଅଯୋଧ୍ୟା ଓ ବିହାର ଯେଉଁ ସ୍ଥାନରେ ଅଛି, ସେହି ଦେଶଗୁଡ଼ିକ ଚନ୍ଦ୍ରଗୁପ୍ତଙ୍କ ଅଧୀନ ହେଲା । ରାଜାଙ୍କର ହିନ୍ଦୁଧର୍ମ,

ତେଣୁ ତାଙ୍କ ସମସ୍ତ ଠାରୁ ହିନ୍ଦୁଧର୍ମର ଉନ୍ନତି ହେଲା । ସେ ପ୍ରଜା-ମାନଙ୍କୁ ଅତି ସୁନ୍ଦରରୂପେ ପରିପାଳନ କରୁଥିଲେ । ତାଙ୍କ ରାଜ୍ୟରେ ମୁଦ୍ରା ବ୍ୟବହୃତ ହେଉଥିଲା; କେତେକ ସୁବର୍ଣ୍ଣମୁଦ୍ରା ତାଙ୍କର ଓ ତାଙ୍କ ପତ୍ନୀ କୁମାରଦେବୀଙ୍କର ନାମରେ କରାଯାଇ ଥିଲା । ସେ ୧୦ ବର୍ଷ ରାଜତ୍ୱ କରି ୩୩୦ ଶତାବ୍ଦୀରେ ପ୍ରାଣତ୍ୟାଗ କଲେ ।

ସମୁଦ୍ରଗୁପ୍ତ ଚନ୍ଦ୍ରଗୁପ୍ତଙ୍କର ପୁତ୍ର । ପିତାଙ୍କ ଉତ୍ତାରୁ ସେ ପାଟଳୀ-ପୁତ୍ରର ରାଜା ହେଲେ । ସେ ଜଣେ ପ୍ରକୃତ ବୀର; ଯୁଦ୍ଧ ବିଦ୍ୟା ବ୍ୟତୀତ ଅନ୍ୟାନ୍ୟ କଳାରେ ମଧ୍ୟ ତାଙ୍କର ପ୍ରଗାଢ଼ ଶ୍ରଦ୍ଧା ଥିଲା । ସେ ସଙ୍ଗୀତ ବିଦ୍ୟାକୁ ଅତି ଭଲ ପାଉଥିଲେ, ପୁଣି ବୀଣା-ବାଦନ କରି ଉତ୍ତମ ସଙ୍ଗୀତ କରିପାରୁ ଥିଲେ । ସେ ଜଣେ କବି, କେତେ କବିତା ମଧ୍ୟ ସେ ଲେଖିଥିଲେ । ଜ୍ଞାନୀ ଓ ପଣ୍ଡିତମାନଙ୍କୁ ନିକଟରେ ରଖି ସେମାନଙ୍କ ସହବାସରେ ବହୁ ଜ୍ଞାନାର୍ଜନ କରୁଥିଲେ । ଏହି ପଣ୍ଡିତମାନେ ରାଜାଙ୍କ ନିକଟରେ ବିବିଧଶାସ୍ତ୍ର ଚର୍ଚ୍ଚା କରୁଥିଲେ । ସେ ଜଣେ ନୈଷ୍ଠିକ ହିନ୍ଦୁ, ବିଷ୍ଣୁଙ୍କଠାରେ ତାଙ୍କର ଅଚଳା ଭକ୍ତି ଥିଲା । ମାତ୍ର ହିନ୍ଦୁ ବୋଲି ସେ ଅନ୍ୟ ଧର୍ମର ଲୋକଙ୍କୁ ଘୃଣା କରୁ ନ ଥିଲେ । ଗୁପ୍ତରାଜାମାନଙ୍କ ସମୟରେ ପ୍ରଜାମାନେ ନିଜ ନିଜ ଧର୍ମାନୁଯାୟୀ ଚଳିବାରେ କୌଣସି ଆପତ୍ତି ନ ଥିଲା । ସମୁଦ୍ରଗୁପ୍ତଙ୍କର ଜଣେ ପ୍ରିୟତମ ବୌଦ୍ଧ ବନ୍ଧୁ ଥିଲେ, ତାଙ୍କ ନାମ ବସୁବନ୍ଧୁ ।

ସମୁଦ୍ରଗୁପ୍ତ ପ୍ରାୟ ୪୫ ବର୍ଷ କାଳ ରାଜତ୍ୱ କରିଥିଲେ । ସେ ବାହୁବଳରେ ଭାରତର ଏକମାତ୍ର କ୍ଷମତାପନ୍ନ ସମ୍ରାଟ ହୋଇଥିଲେ । ପ୍ରଥମେ ସେ ଗଙ୍ଗାତୀରବର୍ତ୍ତୀ ରାଜ୍ୟଗୁଡ଼ିକ ଜୟ କରି ପରେ ଦିଗ୍‌ବିଜୟ କରିବାକୁ ଦକ୍ଷିଣ ଆଡ଼େ ଯାତ୍ରା କଲେ । କୋଶଳ ରାଜ୍ୟ ଜୟ କଲା

ପରେ ଶେଷରେ ସେ କାଞ୍ଚୀଠାରେ ପହଞ୍ଚିଲେ, ସେଠାରୁ ପୁଣି ଆଉ ଗୋଟିଏ ମାର୍ଗରେ ସ୍ୱଦେଶକୁ ପ୍ରତ୍ୟାବର୍ତ୍ତନ କଲେ । ସମୁଦ୍ରଗୁପ୍ତଙ୍କର ଏହି ଦକ୍ଷିଣ ଅଭିଯାନରେ ଗୁପ୍ତ ସାମ୍ରାଜ୍ୟର ପରିମାଣ ବଢ଼ି ନ ଥିଲା ସତ୍ୟ, ମାତ୍ର ଦାକ୍ଷିଣାତ୍ୟର ରାଜାଗଣ ତାଙ୍କୁ ରାଜା ବୋଲି ସମ୍ମାନ ଦେଖାଇଲେ । ଉତ୍ତର ଓ ପୂର୍ବରେ ମଧ୍ୟ ଏପରି କେତେକ ରାଜ୍ୟ ସମୁଦ୍ରଗୁପ୍ତଙ୍କୁ ରାଜା ବୋଲି ମାନୁଥିଲେ । ସେ ଏହି ଦିଗ୍‌ବିଜୟ ପରେ ପ୍ରାଚୀନ ରୀତି ଅନୁଯାୟୀ ଗୋଟିଏ ଅଶ୍ୱମେଧ ଯଜ୍ଞ ବ୍ରାହ୍ମଣମାନଙ୍କଦ୍ୱାରା କରାଇ ଥିଲେ ।

ସମୁଦ୍ରଗୁପ୍ତଙ୍କ ଉତ୍ତାରୁ ଗୁପ୍ତ ସିଂହାସନରେ ତାଙ୍କ ପୁତ୍ର ଦ୍ୱିତୀୟ ଚନ୍ଦ୍ର-ଗୁପ୍ତ ବସିଲେ । ତାଙ୍କର ପରାକ୍ରମ ଓ ସାହସ ହେତୁ ସେ "ବିକ୍ରମାଦିତ୍ୟ" ନାମରେ ଖ୍ୟାତ ହୋଇଥିଲେ । ସେ କେତେକ ଦେଶ ସହିତ ଯୁଦ୍ଧ କରିଥିଲେ ଏବଂ ଶକମାନଙ୍କୁ ଯୁଦ୍ଧରେ ପରାସ୍ତ କରି, ସେମାନଙ୍କର ରାଜ୍ୟ ମାଳବ, ଗୁଜରାଟ ଓ ସୁରାଷ୍ଟ୍ର ବା କାଥିଆବାଡ଼ ଗୁପ୍ତରାଜ୍ୟରେ ମିଶାଇ ଥିଲେ (୩୯୫) । ମାଳବ ଦେଶର ରାଜଧାନୀ ଉଜ୍ଜୟିନୀ ନଗରୀ ବିକ୍ରମଙ୍କ ସମୟରେ ବହୁ ଉନ୍ନତି ଲାଭ କରିଥିଲା, ବହୁଳ ବାଣିଜ୍ୟଦ୍ୱାରା ନଗର ଧନପୂର୍ଣ୍ଣ ହୋଇଥିଲା । ସେହି ଦିନୁ ଏହା ହିନ୍ଦୁମାନଙ୍କର ଗୋଟିଏ ପ୍ରଧାନ ତୀର୍ଥକ୍ଷେତ୍ରରୂପେ ପରିଗଣିତ ।

ବିକ୍ରମାଦିତ୍ୟଙ୍କ ନିକଟରେ କେତେକ ପଣ୍ଡିତ ଓ କବି ଥିଲେ । ସେମାନଙ୍କ ମଧ୍ୟରେ କାଳିଦାସ ସର୍ବପ୍ରଧାନ; ସେ ଅନେକ ସଂସ୍କୃତ କାବ୍ୟ ଓ ନାଟକ ଲେଖିଅଛନ୍ତି । ଶକୁନ୍ତଳା ନାମକ ନାଟକ ସର୍ବୋତ୍କୃଷ୍ଟ । ବରାହମିହିର ନାମକ ଜଣେ ଅଦ୍ୱିତୀୟ ଜ୍ୟୋତିର୍ବିଦ୍ ଜ୍ୟୋତିଷ ବିଷୟରେ କେତେ ପୋଥି ଲେଖି ଯାଇଛନ୍ତି ।

ବିକ୍ରମାଦିତ୍ୟଙ୍କ ସମୟରେ ଫାହିଆନ୍ ନାମକ ଜଣେ ଚୀନଦେଶ-ବାସୀ ଭାରତବର୍ଷକୁ ଆସିଥିଲେ; ତାଙ୍କର ବୌଦ୍ଧ ଧର୍ମ, ଏଣୁ ସେ ବୁଦ୍ଧ ଦେବଙ୍କ ଜନ୍ମ ସ୍ଥାନ ଦେଖିବା ଉଦ୍ଦେଶ୍ୟରେ ଆସିଥିଲେ । ଭାରତବର୍ଷର ନାନାସ୍ଥାନ ଦେଖି, ସକଳ ବୌଦ୍ଧ ତୀର୍ଥ ପରିଦର୍ଶନ କରିବା ପରେ ସେ ସ୍ୱଦେଶକୁ ଫେରିଲେ । ଭାରତରେ ଯାହା ଦେଖିଥିଲେ, ସେ ଗୋଟିଏ ପୁସ୍ତକରେ ଲେଖିଥିଲେ; ତାହା ପଢିଲେ ବିକ୍ରମଙ୍କ ସମୟରେ ଦେଶରେ ପ୍ରଜାମାନଙ୍କର ଅବସ୍ଥା କିପରି ଥିଲା ଜଣାଯାଏ । ସେ ଲେଖି ଅଛନ୍ତି—"ଦେଶରେ ଅନେକ ନଗର ଅଛି । ସେଗୁଡ଼ିକର ଅବସ୍ଥା ଖୁବ୍ ଭଲ । ଅନେକ ଧନୀଲୋକ ଅଛନ୍ତି । ଦେଶର ନାନାସ୍ଥାନରେ ଅତିଥିଶାଳା ଓ ପାନ୍ଥଶାଳାମାନ ରଖା ଯାଇଅଛି । ରାଜଧାନୀରେ ଗୋଟିଏ ପ୍ରଶସ୍ତ ଔଷଧଶାଳା ଅଛି, ସେଠାରେ ଲୋକଙ୍କୁ ବିନା ମୂଲ୍ୟରେ ଔଷଧ ବିତରଣ କରାଯାଏ । ପ୍ରଜାମାନେ ଅତି ସୁଖରେ ଜୀବନ ଯାପନ କରୁଅଛନ୍ତି । ରାଜକର୍ମଚାରୀଗଣ ଲୋକଙ୍କୁ କୌଣସି ବାଧା ଦିଅନ୍ତି ନାହିଁ । କିଏ କୌଣସି ଦୋଷ କଲେ ମଧ୍ୟ ଅତି ସାଧାରଣ ଦଣ୍ଡ ଦିଆ ଯାଉଛି । ପ୍ରଜାଙ୍କଠାରୁ ଅତି ଅଳ୍ପ ମାତ୍ର କର ଆଦାୟ କରା ଯାଉଅଛି । ରାଜ-କର୍ମଚାରୀଗଣ ଉଚିତମତ ବେତନ ପାଉଅଛନ୍ତି ।

ଦେଶର କୌଣସି ସ୍ଥାନରେ କେହି ଜୀବ ହତ୍ୟା କରୁ ନାହିଁ । ଅତି ହୀନଜାତି ଓ ଚଣ୍ଡାଳମାନେ କେବଳ ମାଂସ ଭକ୍ଷଣ କରନ୍ତି ଓ ମାଂସ କାରବାର କରନ୍ତି ।"

ବିକ୍ରମାଦିତ୍ୟ ୪୧୩ ଅବ୍ଦରେ ପ୍ରାଣତ୍ୟାଗ କଲେ । ତାଙ୍କ ପରେ କୁମାରଗୁପ୍ତ ଓ କୁମାରଗୁପ୍ତଙ୍କ ପରେ ସ୍କନ୍ଦଗୁପ୍ତ ରାଜା ହେଲେ । ସ୍କନ୍ଦଗୁପ୍ତ ୪୮୦ରେ ପ୍ରାଣତ୍ୟାଗ କଲେ । ସ୍କନ୍ଦଗୁପ୍ତଙ୍କ ସମୟରେ ହୁନମାନେ ମଧ୍ୟ-ଆସିଆରୁ ଆସି ରାଜ୍ୟରେ ପ୍ରବେଶ କଲେ । ସେମାନେ ଦଳ ଦଳ ହୋଇ

ଥରକୁ ଥର ଆସି ଗୁପ୍ତରାଜ୍ୟ ଆକ୍ରମଣ କରିବାରୁ ସେମାନଙ୍କ ପ୍ରଭାବରେ ଗୁପ୍ତରାଜ୍ୟ ଛାରଖାର ହେଲା । ହୁନମାନେ ଛୋଟ ଛୋଟ ରାଜ୍ୟ ସ୍ଥାପନ କରି ରହିବାକୁ ଲାଗିଲେ ।

୩୨୦ ଠାରୁ ୪୮୦ ପର୍ଯ୍ୟନ୍ତ ଗୁପ୍ତରାଜାମାନେ ଭାରତବର୍ଷରେ ସର୍ବପ୍ରଧାନ ରାଜା ହୋଇଥିଲେ । ଏହି ସମୟରେ ହିନ୍ଦୁଧର୍ମର ପ୍ରାଧାନ୍ୟ ବଢ଼ିଥିଲା, ରାଜାମାନେ ହିନ୍ଦୁ ଥିଲେ । ହିନ୍ଦୁ ଧର୍ମରେ କେତେକ ପରିବର୍ତ୍ତନ ହେବାରୁ ଲୋକମାନେ ମଧ୍ୟ ଏହି ଧର୍ମପ୍ରତି ଶ୍ରଦ୍ଧା କଲେ । ବୌଦ୍ଧ ଧର୍ମର ଅହିଂସାବାଦ ହିନ୍ଦୁମାନେ ମଧ୍ୟ ଗ୍ରହଣ କଲେ । ପାଲିଭାଷା ପରିବର୍ତ୍ତେରେ ସଂସ୍କୃତ ଭାଷାର ବହୁଳ ବ୍ୟବହାର ହେଲା । ସଂସ୍କୃତ ସାହିତ୍ୟ ଅତି ଉନ୍ନତ ହେଲା । ଏହି ସମୟରେ ଅଷ୍ଟାଦଶ ପୁରାଣ, ରାମାୟଣ ଓ ମହାଭାରତ ଲେଖା ଯାଇଥିଲା । ମନୁ ଧର୍ମଶାସ୍ତ୍ର ପ୍ରଣୟନ କରିଥିଲେ । ପୁନର୍ବାର ବ୍ରାହ୍ମଣମାନେ ସେମାନଙ୍କ ଅଧିକାର ପାଇଲେ ।

---

## ହର୍ଷବର୍ଦ୍ଧନ ଓ ହୁଏନ୍‌ସାଁ

ଭାରତବର୍ଷରେ ଷଷ୍ଠ ଶତାବ୍ଦୀରେ କେହି ବିଖ୍ୟାତ ରାଜା ନ ଥିଲେ, ହୁନମାନଙ୍କ ଆକ୍ରମଣରେ ଗୁପ୍ତରାଜ୍ୟ ଧ୍ୱଂସ ପ୍ରାପ୍ତ ହେଲା । ଭାରତବର୍ଷ ପୁନର୍ବାର ସାନ ସାନ ରାଜ୍ୟରେ ବିଭକ୍ତ ହେବାରୁ, ହୁନମାନେ ସେମାନଙ୍କର ରାଜତ୍ୱ ସ୍ଥାପନ କଲେ, ମାତ୍ର ହୁନରାଜା ଗୋଟିଏ ଯୁଦ୍ଧରେ ପରାଜିତ ହେଲେ ।

ସପ୍ତମ ଶତାବ୍ଦୀରେ ହୁନମାନେ ଭୁକମାନଙ୍କ ଦ୍ୱାରା ବିତାଡ଼ିତ ହେଲେ । ଭାରତବର୍ଷରେ ଶାନ୍ତି ସ୍ଥାପିତ ହେଲା । ଏହି ସମୟରେ ପାଟଳୀପୁତ୍ରର ପୂର୍ବ ବୈଭବ ଲୋପ ପାଇ, ତାହା ଭଗ୍ନ ଓ ହୀନ ଅବସ୍ଥାରେ ଥିଲା । ଗୁପ୍ତବଂଶର ଆଧିପତ୍ୟ ଲୁପ୍ତ ହୋଇଥିଲା ।

ଦେଶର ଏପରି ଅବସ୍ଥାରେ ହର୍ଷବର୍ଦ୍ଧନ ନିଜର ରାଜ୍ୟ ସ୍ଥାପନ କଲେ । ସେ ୬୦୬ ଠାରୁ ୬୪୭ ପର୍ଯ୍ୟନ୍ତ ରାଜା ହୋଇଥିଲେ । ତାଙ୍କର ଯୁବା ବୟସରେ ପ୍ରାୟ ସାତ ବର୍ଷ ପର୍ଯ୍ୟନ୍ତ ଯୁଦ୍ଧ କରି ଶେଷରେ ସେ କନାଉଜର ରାଜା ହେଲେ । ହର୍ଷଙ୍କର ପିତା ପ୍ରଭାକରବର୍ଦ୍ଧନ ଥାନେଶ୍ୱରର ରାଜା । ପିତାଙ୍କ ଉତ୍ତାରୁ ସେ ୧୬ ବର୍ଷ ବୟସରେ ରାଜା ହୋଇ ଅନେକ ଯୁଦ୍ଧ କରି ସମସ୍ତ ଆର୍ଯ୍ୟାବର୍ତ୍ତ ନିଜ ଶାସନାଧୀନ କଲେ । ସେ ଦକ୍ଷିଣର ଚାଲୁକ୍ୟ ଦେଶ ଜୟ କରିବାକୁ ଯାଇଥିଲେ । ସେଠାର ରାଜା ପୁଲକେଶିନ ଓ ହର୍ଷଙ୍କ ମଧ୍ୟରେ ଯୁଦ୍ଧ ହେଲା, ମାତ୍ର ସେ ଯୁଦ୍ଧରେ ଅକୃତକାର୍ଯ୍ୟ ହୋଇ ଫେରି ଆସିଲେ ।

ହର୍ଷବର୍ଦ୍ଧନଙ୍କ ସମୟରେ ଚୀନ ଦେଶରୁ ଭାରତବର୍ଷର ବୌଦ୍ଧ ତୀର୍ଥ ସ୍ଥାନ ଦେଖିବାକୁ ଆଉ ଜଣେ ପରିବ୍ରାଜକ ଆସିଥିଲେ । ତାଙ୍କ ନାମ ହୁଏନ୍‌ସାଂ । ତାଙ୍କ ଲେଖାରୁ ଭାରତବର୍ଷର ସେହି କାଳର ଅବସ୍ଥା, ଲୋକମାନଙ୍କ ଆଚାର ଓ ବ୍ୟବହାର, ହର୍ଷବର୍ଦ୍ଧନଙ୍କ ରାଜନୀତି ଓ ଶାସନ ଇତ୍ୟାଦି ଜଣାଯାଏ । ହର୍ଷଙ୍କ ସମୟରେ ଅନେକ ସ୍ଥାନରେ ବୌଦ୍ଧ ମଠ ଥିଲା । ଏହି ସ୍ଥାନମାନଙ୍କରେ ଛାତ୍ରମାନଙ୍କୁ ବିଦ୍ୟାଶିକ୍ଷା ଦିଆଯାଉଥିଲା । ନାଳନ୍ଦାରେ ଯେଉଁ ମଠ ଥିଲା ତାହା ଅତି ପ୍ରଶସ୍ତ, ସେଠାରେ ଅନେକ ଶିଷ୍ୟ ବିଦ୍ୟାଧ୍ୟୟନ କରୁଥିଲେ । ଅନେକ ବିଜ୍ଞ ପଣ୍ଡିତ ବିଦ୍ୟାଦାନ କରୁଥିଲେ । ସେଠାରେ ହିନ୍ଦୁ ଯୋଗଶାସ୍ତ୍ର, ବୌଦ୍ଧଧର୍ମର ମହାୟାନ ଓ ହୀନାୟନ ପ୍ରଣାଳୀ ବିଷୟ ଶିକ୍ଷା ଦିଆଯାଉଥିଲା । ଶିଷ୍ୟଗଣ ବେଦ, ଗଣିତ, ଆୟୁର୍ବେଦ ମଧ୍ୟ ଶିଖୁଥିଲେ । ଏହି ମହାବିଦ୍ୟାଳୟର ସକଳ ପ୍ରକାର ବ୍ୟୟ ରାଜକୋଷରୁ ଦିଆ ଯାଉଥିଲା । ନାଳନ୍ଦାରେ ଶିଷ୍ୟମାନଙ୍କୁ ବାହାରୁ ଏକ ପାହୁଲା ସୁଦ୍ଧା ବ୍ୟୟ କରିବାକୁ ପଡ଼ୁ ନ ଥିଲା । ସେମାନଙ୍କ ରହିବା ନିମନ୍ତେ ଗୃହ ନିର୍ମିତ ହୋଇଥିଲା ଓ ସେମାନଙ୍କ ଆହାରାଦିର ସୁବନ୍ଦୋବସ୍ତ କରାଯାଇଥିଲା । ମୋଟରେ

୧୦,୦୦୦ ଶିଷ୍ୟ ଥିଲେ । ସେଠାରେ ଅନେକ ବୌଦ୍ଧ ସନ୍ନ୍ୟାସୀ ମଧ୍ୟ ଗୁରୁ ପଦରେ ନିଯୁକ୍ତ ହୋଇଥିଲେ । କୌଣସି ଭଦ୍ର ବ୍ୟକ୍ତି ସେଠାକୁ ଗଲେ ନାଳନ୍ଦାର ଗୁରୁ ଶିଷ୍ୟବର୍ଗ ତାଙ୍କୁ ବହୁତ ସମ୍ମାନ ଦେଖାଉ ଥିଲେ । ସେମାନେ ହୁଏନ୍‌ସାଙ୍ଗଙ୍କ ପ୍ରତି ବହୁତ ଆଦର ଦେଖାଇ ସମ୍ମାନରେ ଅଭ୍ୟର୍ଥନା କରିଥିଲେ ।

ହର୍ଷ ଜଣେ ବଡ଼ ଚତୁର ରାଜା, ସେ ନିଜ ଭଗ୍ନୀ ରାଜ୍ୟଶ୍ରୀଙ୍କ ଉପଦେଶାନୁଯାୟୀ ରାଜ୍ୟ ଶାସନ କରୁଥିଲେ । ତାଙ୍କ ଅଧୀନରେ ୨୦ ଜଣ ସାମନ୍ତରାଜା ଥିଲେ । ଏମାନେ ରାଜ୍ୟର ବିଭିନ୍ନ ସ୍ଥାନରେ ରାଜ-କାର୍ଯ୍ୟ ଚଳାଉଥିଲେ । ରାଜା ଏମାନଙ୍କ କାର୍ଯ୍ୟ ତଦାରଖ କରିବା ନିମନ୍ତେ, ପୁଣି ପ୍ରଜାଙ୍କ ଅବସ୍ଥା ସ୍ୱଚକ୍ଷୁରେ ଦେଖି ସେମାନଙ୍କର ମଙ୍ଗଳ କରିବା ନିମନ୍ତେ, ରାଜ୍ୟରେ ପ୍ରତିବର୍ଷ ଅନେକ ଦିନ ବୁଲୁଥାନ୍ତି । ସେ ନାନା ସ୍ଥାନକୁ ଗମନ କରି କର୍ମଚାରୀମାନଙ୍କ ବିଷୟ ବୁଝୁଥାନ୍ତି । ରାଜ୍ୟର ସମସ୍ତ ଧର୍ମର ଉନ୍ନତି ନିମନ୍ତେ ସେ ଅନେକ ଧନ ପ୍ରଦାନ କରନ୍ତି । ତାଙ୍କ ସମୟରେ ଦେଶରେ ଅନେକ ହିନ୍ଦୁ ଦେବାଳୟ, ବୌଦ୍ଧ ସ୍ତୂପ ଓ ଜୈନ୍ୟ ମନ୍ଦିର ନିର୍ମିତ ହୋଇଥିଲା । ଲୋକଙ୍କ ଧର୍ମରେ ସେ କୌଣସି ଆପତ୍ତି କରୁ ନ ଥିଲେ । ସେ ନିଜେ ବୌଦ୍ଧ ଧର୍ମ ଗ୍ରହଣ କରିଥିଲେ ମଧ୍ୟ ଅନ୍ୟ ଧର୍ମାବଲମ୍ବୀଙ୍କୁ ଘୃଣା କରୁ ନ ଥିଲେ । ତାଙ୍କ ରାଜ୍ୟରେ ଚୋର ଡ଼କାୟତଙ୍କ ଉପଦ୍ରବ ନ ଥିଲା । ପ୍ରଜାମାନେ ରାଜାଙ୍କୁ ଅଳ୍ପ କର ଦେଉଥିଲେ । ରାଜା ଅଳ୍ପ ଦୋଷ ଦେଖି ମଧ୍ୟ କଠିନଦଣ୍ଡ ଦେଉ ଥିଲେ, ରାଜ୍ୟରେ ଜୀବହିଂସା ନିଷିଦ୍ଧ ଥିଲା । ବାଣିଜ୍ୟ ଓ ଯାତାୟତ ନିମନ୍ତେ ଗୋଟିଏ ଗ୍ରାମରୁ ଅନ୍ୟଠାକୁ ରାସ୍ତା ଥିଲା । ବାଟରେ ଦୁଇ ପାଖରେ ଛାୟା ପାଇଁ ଗଛ ଲଗା ହୋଇଥିଲା । ପାନ୍ଥଶାଳା ଏବଂ ପାନ୍ଥମାନଙ୍କ ନିମନ୍ତେ ଔଷଧଶାଳାମାନ ଥିଲା, ପୁଣି ପ୍ରଜାଙ୍କ ସତ୍‌ଶିକ୍ଷା ନିମନ୍ତେ ରାଜା ବହୁ ଧନ ବ୍ୟୟ କରୁଥିଲେ ।

ହର୍ଷବର୍ଦ୍ଧନ ସମୁଦ୍ରଗୁପ୍ତଙ୍କ ପରି ଜଣେ ଅତୁଳନୀୟ ଯୋଦ୍ଧା ଓ ଉଚ୍ଚଧରଣର କବି । ତାଙ୍କ ସମୟରେ ସଂସ୍କୃତ ଭାଷାର ଅଭିବୃଦ୍ଧି ହୋଇ ଥିଲା । ସେ କେତେଗୋଟି ନାଟକ ନିଜେ ରଚନା କରିଥିଲେ । ତାଙ୍କ ନିକଟରେ ବାଣଭଟ୍ଟ ନାମକ ଜଣେ ସଂସ୍କୃତଜ୍ଞ ପଣ୍ଡିତ ଥିଲେ । ସେ ଦୁଇଟି ଅତି ଉତ୍କୃଷ୍ଟ ପୁସ୍ତକ ଲେଖି ଅଛନ୍ତି । ପ୍ରଥମଟି ହର୍ଷ-ଚରିତ, ଏଥିରେ ହର୍ଷବର୍ଦ୍ଧନଙ୍କ ବିଷୟ ଲେଖାଅଛି; ଦ୍ୱିତୀୟଟି କାଦମ୍ବରୀ— ଗୋଟିଏ ସଂସ୍କୃତ ଗଦ୍ୟ କାବ୍ୟ । କାଦମ୍ବରୀ ପରି ପୁସ୍ତକ ସଂସ୍କୃତ ଭାଷାରେ ଆଉ ନାହିଁ କହିଲେ ଚଳେ ।

ହୁଏନ୍‌ସାଂ ଜଣେ ପ୍ରଧାନ ବୁଦ୍ଧଭକ୍ତ ଓ ଜ୍ଞାନୀ, ସେ ମହାଯାନ ବୌଦ୍ଧମତ ବିଷୟ ଉତ୍ତମରୂପେ ଜାଣିଥିଲେ । ହର୍ଷ ନିଜେ ହୀନାଯାନ ମତ ଗ୍ରହଣ କରିଥିଲେ ହେଁ ବା ହୁଏନ୍‌ସାଂଙ୍କ ଉପଦେଶ ଶ୍ରଦ୍ଧା ସହିତ ଶୁଣୁ-ଥିଲେ । ସେ କନୋଜକୁ ୬୪୪ ରେ ଗମନ କରି ସେଠାରେ ରାଜ୍ୟର ବିଶିଷ୍ଟ ବୌଦ୍ଧ ସନ୍ନ୍ୟାସୀ, ବ୍ରାହ୍ମଣ ଓ ଜୈନମାନଙ୍କୁ ଡକାଇ ଗୋଟିଏ ବିରାଟ ସଭା ଅନୁଷ୍ଠିତ କରିଥିଲେ । ସଭାରେ ପ୍ରାୟ ୬୦୦୦ ଜଣ ଦେଶର ନାନା ସ୍ଥାନରୁ ଆସି ଉପସ୍ଥିତ ହୋଇଥିଲେ । ୮ ଦିନ ପର୍ଯ୍ୟନ୍ତ ପଣ୍ଡିତମାନଙ୍କ ମଧ୍ୟରେ ଶାସ୍ତ୍ରଚର୍ଚ୍ଚା ଓ ବାଦାନୁବାଦ ହୋଇ-ଥିଲା । ସଭା ଶେଷରେ ପ୍ରୟାଗଠାରେ ଗୋଟିଏ ଉତ୍ସବ ହେଲା । ସେହି ଉତ୍ସବରେ ହର୍ଷ ଦରିଦ୍ର ଲୋକମାନଙ୍କୁ ଅନେକ ଧନ ବାଣ୍ଟିଲେ । ହୁଏନ୍‌ସାଂ ରାଜାଙ୍କ ଆତିଥ୍ୟରେ ଅତ୍ୟନ୍ତ ପ୍ରୀତ ହେଲେ ଏବଂ ସେଠାରୁ ଅନ୍ୟାନ୍ୟ ସ୍ଥାନକୁ ଯାଇ ପରିଶେଷରେ ସ୍ୱଦେଶକୁ ଫେରିଲେ । ସେ ଗଲାବେଳେ ସଙ୍ଗରେ ଅନେକ ବୌଦ୍ଧ ଧର୍ମ ଗ୍ରନ୍ଥ ନେଇଥିଲେ ।

ହର୍ଷବର୍ଦ୍ଧନ ଯୁଦ୍ଧ କରି ତାଙ୍କର ରାଜ୍ୟ ଅନେକ ଦୂର ବଢ଼ାଇ ଥିଲେ । ପ୍ରଥମେ ତାଙ୍କର ୫୦,୦୦୦ ପଦାତିକ ସେନା, ୫୦୦୦

ହସ୍ତୀ ଓ ୨୦,୦୦୦ ଘୋଡ଼ା ଥିଲା । ମାତ୍ର କେତେକ ବର୍ଷ ଉତ୍ତାରୁ ଏହି ସୈନ୍ୟ ସଂଖ୍ୟା ଅଧିକ ହୋଇଥିଲା । ସେ ଭାରତବର୍ଷର ଉତ୍ତର ଭାଗ ଜୟ କଲେ, ବହାର ଓ ବଙ୍ଗଳା ଦେଶ ତାଙ୍କର ଅଧୀନ ହେଲା । ୬୧୨ ସାଲରେ ତାଙ୍କର ରାଜ୍ୟ ପୂର୍ଣ୍ଣାଙ୍ଗ ପ୍ରାପ୍ତ ହୋଇଥିଲା, ପରେ ସେ ୬୨୦ରେ ଚାଲୁକ୍ୟ ଦେଶ ଆକ୍ରମଣ କଲେ । ମାତ୍ର ପୁଲକେସିନଙ୍କ ଦ୍ୱାରା ପରାଜିତ ହେଲେ । ୬୪୩ରେ ସେ ଗଞ୍ଜାମ ଆକ୍ରମଣ କଲେ । ବଲ୍ଲଭୀ ଦେଶ ମଧ୍ୟ ତାଙ୍କ ଆଧିପତ୍ୟ ସ୍ୱୀକାର କରିଥିଲା; ସୁଦୂର ଆସାମ ରାଜା ମଧ୍ୟ ହର୍ଷଙ୍କ ଆଜ୍ଞା ଲଙ୍ଘନ କରିପାରୁ ନ ଥିଲେ । ସେ ୬୪୭ରେ ପ୍ରାଣତ୍ୟାଗକଲେ ।

—:O:✽:O:—

## ରାଜପୁତ ଜାତି ଓ ସେମାନଙ୍କ ରାଜ୍ୟ

ହର୍ଷବର୍ଦ୍ଧନଙ୍କ ଉତ୍ତାରେ ତାଙ୍କ ରାଜ୍ୟ କ୍ଷୀଣ ହୋଇଗଲା; ପୁନର୍ବାର ଭାରତବର୍ଷ ଛୋଟ ଛୋଟ ରାଜ୍ୟରେ ପୂର୍ଣ୍ଣ ହେଲା । ୭ମ ଶତାବ୍ଦୀ ଠାରୁ ୧୧ଶ ଶତାବ୍ଦୀ ଅର୍ଥାତ୍ ମହମ୍ମଦୀୟମାନଙ୍କ ରାଜତ୍ୱ ସ୍ଥାପନ ପର୍ଯ୍ୟନ୍ତ ଏହି ଛୋଟ ରାଜ୍ୟମାନଙ୍କ ମଧ୍ୟରେ ଅନେକ ଯୁଦ୍ଧ ହେଉଥିଲା । ଏହି ରାଜ୍ୟ-ଗୁଡ଼ିକ ରାଜପୁତମାନଙ୍କର । ରାଜପୁତମାନେ କିଏ ? ଏମାନେ କ୍ଷତ୍ରିୟ, ବୀର ଓ ଯୁଦ୍ଧନିପୁଣ । ରାଜପୁତ୍ ବୋଲି ଗୋଟିଏ ସ୍ୱତନ୍ତ୍ର ଜାତି ନ ଥିଲେ, ପୁଣି ଏମାନେ ସମସ୍ତେ ଭାରତବର୍ଷରେ ଜନ୍ମଗ୍ରହଣ କରି ନ ଥିଲେ । କେତେ ବୈଦେଶିକ ଯୋଦ୍ଧା ଓ ସୈନ୍ୟ ମଧ୍ୟ ଆମ୍ଭ ଦେଶରେ ରହି ରାଜପୁତ୍ ବୋଲାଉ ଥିଲେ । ଏମାନେ ଭାରତବର୍ଷରେ ଅନେକ ଦିନ ରହିବାରୁ, କ୍ରମେ ଭାରତର ଲୋକ ସେମାନଙ୍କ ଜାତି ଓ ସେମାନଙ୍କ ମଧ୍ୟରେ କୌଣସି ପ୍ରଭେଦ ରହିଲା ନାହିଁ ।

ଅମ୍ଭେମାନେ ଜାଣୁ ଯେ, ଗୁପ୍ତରାଜ୍ୟ ପ୍ରତିଷ୍ଠିତ ହେବା ପୂର୍ବେ ମଧ୍ୟ-ଅାସିଆରୁ ଶକମାନେ ଆସି ପଞ୍ଜାବ ଓ ସିନ୍ଧୁ ଦେଶରେ ସେମାନଙ୍କର

ରାଜ୍ୟ ସ୍ଥାପନ କରିଥିଲେ । ପୁଣି ଆଉ କେତେ ବୈଦେଶିକ ଯାଇ ପହ୍ଲବ ରାଜ୍ୟ ସ୍ଥାପନ କଲେ । ଗୁପ୍ତବଂଶର ଶେଷ ରାଜା ସ୍କନ୍ଦଗୁପ୍ତଙ୍କ ସମୟରେ ପୁଣି ତାଙ୍କ ମୃତ୍ୟୁପରେ ହୁନମାନେ ବାୟବ୍ୟ କୋଣ ଆଡ଼ୁ ଆସି ଗୁପ୍ତରାଜ୍ୟ ଧ୍ୱଂସ କଲେ । ହୁନ୍‌ମାନଙ୍କ ନେତା ମିହିରଗୁଲ ତାଙ୍କର ଗୋଟିଏ ରାଜ୍ୟ ଗଢ଼ିଲେ । ମାତ୍ର ସ୍ୱଦେଶୀୟ ରାଜାମାନେ ଏକତ୍ରିତ ହୋଇ ମିହିରଗୁଲଙ୍କୁ ପରାସ୍ତ କରିବାରୁ, ସେ କାଶ୍ମୀରକୁ ପଳାଇ ଯାଇ ସେଠାରେ ରାଜାଙ୍କୁ ହତ୍ୟାକରି କାଶ୍ମୀର ଅଧିକାର କଲେ । ଶକ, ହୁନଙ୍କ ବ୍ୟତୀତ ଅନ୍ୟାନ୍ୟ କେତେକ ବୈଦେଶିକମାନେ ମଧ୍ୟ ଆସିଥିଲେ । ୬୫୦ ଠାରୁ ୯୦୦ ପର୍ଯ୍ୟନ୍ତ ଏହି ଦେଶକୁ ବୈଦେଶିକ ସ୍ରୋତ ଅବିରତ ଚାଲି ଥିଲା । ଏମାନେ ଏଠାରେ ଅନେକ ଦିନ ରହି ଯାଇ ଭାରତୀୟ ପାଲଟି ଯାଇଥିଲେ । ଏମାନଙ୍କର ଯୁଦ୍ଧହିଁ ପ୍ରଧାନ ବୃତ୍ତି ଥିଲା । ତେଣୁ ଏମାନେ ନିଜକୁ କ୍ଷତ୍ରିୟ ବୋଲି ପରିଚୟ ଦେଲେ । ଏମାନେ ଆପଣାକୁ ରାମଚନ୍ଦ୍ର ଓ ଯୁଧିଷ୍ଠିରଙ୍କ ବଂଶଧର ବୋଲି କହୁଥିଲେ । ଏହି ରାଜପୁତ ଜାତିର ଉତ୍ପତ୍ତି ବିଷୟରେ କେତେଗୋଟି ଗଳ୍ପ ଅଛି । ସେମାନେ ଅଗ୍ନିରୁ ଜାତ ହୋଇଥିଲେ ବୋଲି ଗୋଟିଏ କିମ୍ବଦନ୍ତୀ ଅଛି । ସୂର୍ଯ୍ୟବଂଶ, ଚନ୍ଦ୍ରବଂଶ ବୋଲି କେତେ ରାଜପୁତ୍ ଗର୍ବ କରିଥାନ୍ତି । ପ୍ରକୃତରେ ଏମାନଙ୍କର ପୂର୍ବପୁରୁଷ ସୂର୍ଯ୍ୟ, କି ଚନ୍ଦ୍ର, ବା ଅଗ୍ନି ନୁହନ୍ତି; ଶକ, ହୁନମାନେହିଁ ଏମାନଙ୍କର ପୂର୍ବପୁରୁଷ ।

ସବୁ ରାଜପୁତ୍ ହୁନମାନଙ୍କ ବଂଶଧର ନୁହନ୍ତି । କେତେକ ରାଜପୁତ୍ ଆମ୍ଭ ଦେଶର, ଏମାନଙ୍କ ବଂଶ ଅତି ପ୍ରାଚୀନ । ସେମାନଙ୍କ ଜାତିରେ ଏପରି ଅନେକ ବିଭାଗ ଥିଲା । ଗୋଟିଏ ବିଭାଗ ସହିତ ଅନ୍ୟ ବିଭାଗର ଯୁଦ୍ଧ ହେଉଥିଲା । ଚୌହାନ, ରାଠୋର, ଶିଶୋଦୀୟ, ଗୁର୍ଜର, ପାଲ, ସେନ, ଚନ୍ଦେଲ, ବଘେଲ ପ୍ରଭୃତି ରାଜପୁତ ଜାତିର ବିଭିନ୍ନ ଶାଖା ଅଟେ । ଏମାନେ ଭିନ୍ନ ଭିନ୍ନ ରାଜ୍ୟ ଅଧିକାର କରିଥିଲେ । ଗୁର୍ଜର

ମାନେ କାନ୍ୟକୁବ୍ଜରେ ଥିଲେ । ପାଲମାନଙ୍କ ଅଧୀନରେ ବଙ୍ଗଳାଦେଶ ଥିଲା । ଚନ୍ଦେଲମାନେ ବନ୍ଦେଲଖଣ୍ଡରେ ରାଜ୍ୟ ସ୍ଥାପନ କରି ଥିଲେ । କାଲଚୁରି ବୋଲି ଆଉ ଗୋଟିଏ ଶାଖା ଚେଦି ରାଜ୍ୟ ଶାସନ କରୁଥିଲେ । ଏହା ଛଡ଼ା ରାଜସ୍ଥାନରେ ଅନେକ ରାଜ୍ୟ ଥିଲା । ଏହି ରାଜ୍ୟ ଗୁଡ଼ିକହିଁ ପ୍ରଧାନ; କାରଣ ଏଠାରେ ରାଜପୁତ ଜାତିର ଗୌରବ ଅନେକ ଦିନ ରହିଥିଲା । ପୁଣି ଏଠାର ରାଜାମାନେହିଁ ବୈଦେଶିକ ଶତ୍ରୁଙ୍କ ହସ୍ତରୁ ସ୍ୱଦେଶକୁ ରକ୍ଷା କରିବା ନିମନ୍ତେ ନିଜର ପ୍ରାଣ ଦାନ କରିଥିଲେ । ପାରମାରମାନେ ଓ ଚୌହାନ, ରାଠୋର, ସୋଲଙ୍କି ପ୍ରଭୃତି ଜାତି ରାଜସ୍ଥାନ ବା ରାଜପୁତାନାରେ ସେମାନଙ୍କ ରାଜ୍ୟ ସ୍ଥାପନ କରିଥିଲେ ।

ରାଜପୁତମାନେ ଯୁଦ୍ଧକୁହିଁ ଜୀବନର ପ୍ରଧାନ ବୃତ୍ତି କରିଥିଲେ । ପରସ୍ପର ଯୁଦ୍ଧ କରି ନିଜ ନିଜର ରାଜ୍ୟ ବଢ଼ାଉ ଥିଲେ । ସମୟେ ସମୟେ କେତେକ ରାଜ୍ୟ ଏକ ପକ୍ଷରେ ଓ ଆଉ କେତେକ ଅନ୍ୟ ପକ୍ଷରେ ରହି ଯୁଦ୍ଧ କରୁଥିଲେ । ଏହି ପରସ୍ପର ଯୁଦ୍ଧ ହେତୁରୁ ଦେଶରେ ଏକତା ନ ଥିଲା । କୌଣସି ଜଣେ ପ୍ରବଳ ରାଜାଙ୍କ ଅଧୀନରେ ରହିଲେ ଯେଉଁ ଶାନ୍ତି ମିଳେ, ତାହା ନ ଥିଲା । ଯୁଦ୍ଧରେ ଅନେକ ଲୋକ ମରୁଥିଲେ ପୁଣି ଦେଶର ବହୁ ଧନବ୍ୟୟ ହେଉଥିଲା । ଏଣୁ କ୍ରମେ କ୍ରମେ ଦେଶ ଏକତାହୀନ, ବଳହୀନ ହେଉଥିଲା; ମାତ୍ର ରାଜପୁତମାନଙ୍କ ବୀରତ୍ୱ ଓ ସାହସ ଦେଖାଇବାକୁ ଏହାହିଁ ଉପଯୁକ୍ତ ସମୟ ହୋଇଥିଲା । ଯୁଦ୍ଧ ସେମାନଙ୍କ ପକ୍ଷରେ ଗୋଟିଏ ସାଧାରଣ କାର୍ଯ୍ୟ, ସେମାନେ ପ୍ରାଣ ଭୟରେ କେବେ ଯୁଦ୍ଧ ଭୂମିରୁ ଫେରୁ ନ ଥିଲେ । ରାଜପୁତ ରାଜାମାନେ ଯୁଦ୍ଧ କରିବା ସମୟରେ ରାଜ୍ୟ ପରିପାଳନ ବିଷୟ ପାସୋରି ନ ଥିଲେ । ସେମାନେ ପ୍ରଜାମାନଙ୍କର ଉନ୍ନତି ନିମନ୍ତେ, ରାଜ୍ୟର ଅଭିବୃଦ୍ଧି ସକାଶେ ଅନେକ ଚେଷ୍ଟା କରୁଥିଲେ ।

ରାଜପୁତମାନେ ବଳବାନ୍, ଧୈର୍ଯ୍ୟବାନ୍ ଓ ସାହସିକ । ସେମାନେ ରାଜା ହେବାକୁ ଉପଯୁକ୍ତ; ମାତ୍ର ସେମାନଙ୍କର ପରସ୍ପର ବିରୋଧ ହେତୁରୁ ବୈଦେଶିକମାନେ ସେମାନଙ୍କୁ ପରାଜିତ କରି ଦେଶରେ ନୂତନ ରାଜତ୍ୱ ସ୍ଥାପନ କରିଥିଲେ ।

ରାଜପୁତ୍-ଯୁଗ ଭାରତ ଇତିହାସରେ ଗୋଟିଏ ପ୍ରଧାନ ଯୁଗ । ଏହି ସମୟରେ ଭାରତବର୍ଷର ଜାତୀୟ ଏକତା ବ୍ୟତୀତ ଅନ୍ୟାନ୍ୟ ବିଷୟରେ ଅନେକ ଉନ୍ନତି ହୋଇଥିଲା । ଏମାନଙ୍କ ରାଜତ୍ୱରେ ହିନ୍ଦୁ ଧର୍ମର ପ୍ରଭାବ ଅଧିକ ହୋଇଥିଲା ଓ ବୌଦ୍ଧ ଧର୍ମର ଅବନତି ଘଟିଥିଲା । ରାଜପୁତ୍ ରାଜାମାନେ ହିନ୍ଦୁଧର୍ମାବଲମ୍ବୀ ହୋଇ ଥିବାରୁ, ଅନେକ ଦେବାଳୟ ନିର୍ମାଣ କରାଇ ଥିଲେ । ସେ ଗୁଡ଼ିକରୁ କେତେକ ଏବେ ମଧ୍ୟ ଅଛି, ଆଉ କେତେକ ପଠାଣମାନଙ୍କ ଦ୍ୱାରା ଭଙ୍ଗା ଯାଇଛି । ହିନ୍ଦୁଧର୍ମ ସଙ୍ଗେ ସଙ୍ଗେ ସଂସ୍କୃତ ସାହିତ୍ୟର ମଧ୍ୟ ବିଶେଷ ଉନ୍ନତି ହୋଇଥିଲା । ଅନେକ ନୂତନ ପୁସ୍ତକ ଲେଖା ହୋଇଥିଲା । ସଂସ୍କୃତ ଭାଷା ଛଡ଼ା ହିନ୍ଦୀ, ବଙ୍ଗଳା, ଓଡ଼ିଆ ପ୍ରଭୃତି ଭାଷାରେ ମଧ୍ୟ କେତେକ ପୁସ୍ତକ ଲେଖା ହୋଇଥିଲା । ରାଜପୁତ୍ ରାଜାମାନଙ୍କ ନଗରରେ ଅନେକ ପଣ୍ଡିତ ଥିଲେ । ବ୍ରାହ୍ମଣମାନେ ସମସ୍ତଙ୍କ ଅପେକ୍ଷା ଉଚ୍ଚସ୍ଥାନ ପାଇଥିଲେ । ଏମାନଙ୍କ ପ୍ରଭାବରେ ବୌଦ୍ଧ ମତର ଉଚ୍ଛେଦ ସାଧିତ ହୋଇଥିଲା ।

କୌଣସି ନାରୀର ଗୌରବ ରକ୍ଷା କରିବାକୁ ହେଲେ, ରାଜପୁତ୍ ତାହାର ପ୍ରାଣ ଦେବାକୁ ଡରୁ ନ ଥିଲା । ସ୍ତ୍ରୀମାନେ ମଧ୍ୟ ସତୀ ଧର୍ମ ପାଳନ କରୁଥିଲେ । କେତେ ରାଜପୁତ୍ ସ୍ତ୍ରୀଙ୍କୁ ଯୁଦ୍ଧ କରିବାର ଜଣା ଥିଲା । ରାଜପୁତ୍‌ମାନେ ଯୁଦ୍ଧ କରି ହାରି ଗଲେ ସେମାନଙ୍କ ସ୍ତ୍ରୀମାନେ ଶତ୍ରୁ ହସ୍ତରେ ଅପମାନିତ ନ ହୋଇ ଅଗ୍ନିରେ ପଡ଼ୁଥିଲେ । ସେମାନେ

ସତୀତ୍ୱକୁ ପ୍ରାଣରୁ ବଳ ଅଦର କରୁଥିଲେ । ଗୋଟିଏ ସ୍ଥାନରେ ପ୍ରକାଣ୍ଡ କହର ଅଗ୍ନି ଜଳା ହେଉଥିଲା, ତହିଁରେ ଅନେକ ନାରୀ ଆନନ୍ଦରେ ଡେଇଁ ପଡ଼ି ପ୍ରାଣ ହରାଉଥିଲେ ।

ଯୁଦ୍ଧ କରିବାକୁ ଓ ରାଜ୍ୟ ପାଳନ କରିବାକୁ ଯେଉଁ ଧନ ଆବଶ୍ୟକ ହୁଏ, ସେ ସବୁ ଦେଶରୁ ଅଦାୟ ହେଉଥିଲା । ରଇତମାନେ ଭୂମି ଚାଷ କରି ଫସଲ ଅଦାୟ କରୁଥିଲେ । ଶୂଦ୍ର ଓ ବୈଶ୍ୟଙ୍କ ଛଡ଼ା ଆଉ କେହି ବାଣିଜ୍ୟ ବ୍ୟବସାୟ କରୁ ନ ଥିଲେ ।

---

## ଦାକ୍ଷିଣାତ୍ୟ

ବିନ୍ଧ୍ୟ ପର୍ବତର ଦକ୍ଷିଣ ଦିଗରେ ଯେଉଁ ଦେଶ ଅଛି ତାହା ଦୁଇ ଭାଗରେ ବିଭକ୍ତ । ପ୍ରଥମ ଭାଗ କୃଷ୍ଣା ନଦୀ ଯାଏ ବ୍ୟାପି ଅଛି । ଦ୍ୱିତୀୟ ଭାଗ କୃଷ୍ଣା ନଦୀର ଦକ୍ଷିଣରେ । ପ୍ରଥମ ଭାଗକୁ ଦାକ୍ଷିଣାତ୍ୟ ପୀଠଭୂମି ଏବଂ ଦ୍ୱିତୀୟଟିକୁ ଦକ୍ଷିଣ ଦେଶ କହନ୍ତି । ଆର୍ଯ୍ୟାବର୍ତ୍ତରେ ଯେପରି ସ୍ୱତନ୍ତ୍ର ରାଜ୍ୟ ଥିଲା, ଦକ୍ଷିଣ ଭାରତରେ ମଧ୍ୟ ସେପରି କେତୋଗୋଟି ସ୍ୱତନ୍ତ୍ର ରାଜ୍ୟ ଥିଲା । ଏହି ରାଜ୍ୟଗୁଡ଼ିକ ଭିନ୍ନ ଭିନ୍ନ ରାଜାମାନଙ୍କ ଅଧୀନରେ ଥିଲା ।

ମୌର୍ଯ୍ୟ ବଂଶର ଅଧଃପତନ ଉତ୍ତାରୁ ଅନ୍ଧ୍ର ଦେଶର ପ୍ରତିପତ୍ତି ଓ କ୍ଷମତା ବଢ଼ିଥିଲା । ଅନ୍ଧ୍ରମାନେ ଏଡ଼େ ପ୍ରବଳ ହୋଇଥିଲେ ଯେ ସେମାନେ ମଗଧ ସାମ୍ରାଜ୍ୟର କେତେକ ଅଂଶ ମଧ୍ୟ ଅଧିକାର କରୁଥିଲେ । ଅନ୍ଧ୍ରମାନଙ୍କର କ୍ଷମତା ନ୍ୟୂନ ହେଲା ଉତ୍ତାରୁ ଚାଲୁକ୍ୟବଂଶ ଏ ଦେଶରେ ସେମାନଙ୍କର ଆଧିପତ୍ୟ ବିସ୍ତାର କଲେ । କ୍ରମେ ଏହି ରାଜ୍ୟ ଗୋଟିଏ ବଡ଼ ରାଜ୍ୟ ହୋଇ ପଡ଼ିଲା । ବାତାପି ବା ବାଦାମି ନାମରେ ଗୋଟିଏ ନଗର ତାହାର ରାଜଧାନୀ ହେଲା । ଚାଲୁକ୍ୟ ରାଜାମାନଙ୍କ ମଧ୍ୟରେ ପୁଲକେସିନ ଜଣେ ବିଖ୍ୟାତ ରାଜା; ସେ ଶ୍ରୀହର୍ଷଙ୍କୁ

ଯୁଦ୍ଧରେ ପରାସ୍ତ କରିଥିଲେ ଏବଂ ରାଜ୍ୟର ଦକ୍ଷିଣ ଭାଗରେ ଯେଉଁ ଦେଶ ଥିଲା ତାହାକୁ ଆକ୍ରମଣ କରି, ସେଠାର ପଲ୍ଲବମାନଙ୍କୁ ପରାଜିତ କଲେ । ତାଙ୍କର ରାଜ୍ୟ ବିସ୍ତୃତ ହେବା ପରେ ସେ ପୂର୍ବ-ଚାଲୁକ୍ୟ-ସାମ୍ରାଜ୍ୟ ନାମରେ ଗୋଟିଏ ଭିନ୍ନ ରାଜ୍ୟ ଗଠନ କରି ସେଠାରେ ତାଙ୍କ ଭ୍ରାତାଙ୍କୁ ପ୍ରତିନିଧି ସ୍ୱରୂପ ରଖିଥିଲେ । ଏ ନୂତନ-ରାଜ୍ୟର ରାଜଧାନୀର ନାମ ବେଙ୍ଗି । ଚାଲୁକ୍ୟମାନେ ପୁଣି ଅନ୍ୟ ଏକ କ୍ଷମତାପନ୍ନ ରାଜପୁତ ଜାତି ଦ୍ୱାରା ପରାସ୍ତ ହୋଇ ରାଜ୍ୟ ହରାଇ ଥିଲେ । ଏହି ନୂତନ ରାଜତ୍ୱ ସମୟରେ ଏଲୋରାର ଅତି ଚମତ୍କାର କାରୁକାର୍ଯ୍ୟମାନ ଶୋଭିତ ଦେବାଳୟ ନିର୍ମିତ ହୋଇଥିଲା । ଏହି ଦେବାଳୟ ଗୋଟିଏ ଗୁହା ଭିତରେ କରାଯାଇଥିଲା । ଏବେ ମଧ୍ୟ ଏଗୁଡ଼ିକ ସେଠାରେ ଅଛି ।

କୃଷ୍ଣା ନଦୀର ଦକ୍ଷିଣରେ ଆଉ କେତେକ ସ୍ୱତନ୍ତ୍ର ରାଜ୍ୟ ଥିଲା ।



ବର୍ତ୍ତମାନ ମଦୁରା ଓ ତିନ୍ନିଭେଲି ଜିଲ୍ଲା ଯେଉଁ ସ୍ଥାନରେ ଅଛି, ସେଠାରେ ପାଣ୍ଡ୍ୟରାଜ୍ୟ ସ୍ଥାପିତ ହୋଇ ଥିଲା । ବଣିକମାନେ ଏ ଦେଶକୁ ବହୁ ଦୂରରୁ ବାଣିଜ୍ୟ କରିବାକୁ ଆସୁଥିଲେ, ତେଣୁ ସ୍ଥାନେସ୍ଥାନେ ରୋମ ଦେଶର ସୁବର୍ଣ୍ଣ-ମୁଦ୍ରା ମିଳୁଥାଏ । ପାଣ୍ଡ୍ୟ ରାଜାମାନେ ରୋମ, ବାବିଲନ ଓ ଆସିରିଆ ଦେଶରୁ ରାଜଦୂତ ପଠାଉଥିଲେ । ପୁଣି ସେହି ଦେଶମାନଙ୍କରୁ ଦୂତମାନେ

ଆସି ପାଣ୍ଡ୍ୟ ଦେଶରେ ରହୁଥିଲେ । ଏଥିରୁ ପାଣ୍ଡ୍ୟ ରାଜାମାନଙ୍କର ଅଧିକାର, ଯଶ ଓ ସେମାନଙ୍କର ଅନ୍ୟ ରାଜ୍ୟ ସଙ୍ଗେ ସମ୍ବନ୍ଧ ଥିବା କଥା ଜଣାଯାଏ । ଏ ଦେଶରୁ ବିଦେଶୀ ବଣିକମାନେ ସମୁଦ୍ରରେ ମିଳୁଥିବା ଶଙ୍ଖ, ମୁକ୍ତା ପ୍ରଭୃତି ପଦାର୍ଥ ବହୁ ମୂଲ୍ୟରେ ନେଇ ସେମାନଙ୍କ ଦେଶରେ ବିକ୍ରୟ କରୁଥିଲେ; ପୁଣି ସେମାନଙ୍କ ଦେଶରୁ କେତେ ଜିନିଷ ଆଣି ଏଠାରେ ବିକ୍ରୟ କରୁଥିଲେ । ଏପରି ବାଣିଜ୍ୟ ଦ୍ୱାରା ପାଣ୍ଡ୍ୟ ଦେଶ ଧନଶାଳୀ ହେଲା । ମଦୁରା ସହର ରାଜ୍ୟର ରାଜଧାନୀ ସ୍ଥାପିତ ଥିଲା । ଏଠାରେ ଅନେକ ଉଚ୍ଚ ଓ ସୁନ୍ଦର ଦେବାଳୟମାନ ସ୍ଥାପିତ ହୋଇ ନଗରର ଶୋଭା ବଢ଼ାଉ ଥିଲା । ଏଠାରେ ରାଜା ନିବାସ କରୁଥିଲେ । ନିକଟରେ ଅନେକ ପଣ୍ଡିତ ଥିଲେ । ଏହି ସମୟରେ ତାମିଲ ସାହିତ୍ୟର ବହୁ ଉନ୍ନତି ହୋଇଥିଲା; ସେହି ଭାଷାରେ ଅନେକ ପୁସ୍ତକ ଲେଖା ଯାଇଥିଲା । ଏହି ସହରର ଦୃଶ୍ୟ ଅତି ରମଣୀୟ । ପୁଣି ପାଣ୍ଡ୍ୟ ରାଜାମାନେ କେତେକାଳ ରାଜତ୍ୱ କରିବା ପରେ ଏକାଦଶ ଶତାବ୍ଦୀରେ ଚୋଳ ରାଜାମାନେ ଏଦେଶ ଅଧିକାର କଲେ । ଚୋଳ ରାଜାମାନଙ୍କ ସମୟରେ ମଧ୍ୟ ରାଜ୍ୟର ବହୁବିଧ ଉନ୍ନତି ସାଧିତ ହୋଇଥିଲା । ଚୋଳ ବଂଶରେ ଅନେକ ବିଖ୍ୟାତ ରାଜା ଥିଲେ । ରାଜରାଜ ବୋଲି ଜଣେ ପୁଣି ତାଙ୍କ ପୁତ୍ରଙ୍କ ରାଜତ୍ୱରେ ଚୋଳଦେଶ ଦକ୍ଷିଣରେ ସିଂହଳ ଓ ଉତ୍ତରରେ କଳିଙ୍ଗ ଯାଏ ବିସ୍ତାର ଲାଭ କଲା । ରାଜରାଜଙ୍କର ଅନେକ ବୋଇତ ଥିଲା । ବୋଇତରେ ଯାଇ ସୈନ୍ୟମାନେ ଜଳଯୁଦ୍ଧ କରୁଥିଲେ । ଚୋଳମାନେ ସୁଚାରୁରୂପେ ରାଜ୍ୟ ଶାସନ କରୁଥିଲେ । ଦେଶପାଳନ କରିବାକୁ ଗୋଟିଏ ମହାସଭା ବସିଥିଲା । ଏହି ସଭାର ପରାମର୍ଶ ନେଇ ରାଜା ସବୁ ରାଜକାର୍ଯ୍ୟ କରୁଥିଲେ; ମହାସଭାକୁ ସାଧାରଣ ପ୍ରଜାମନେ ସଭ୍ୟ ବାଛି ପଠାଉ ଥିଲେ । କୃଷିକ୍ଷେତ୍ରକୁ ଜଳ ନେବା ପାଇଁ କେନାଲମାନ ଖୋଲାଯାଇଥିଲା । ପାଣ୍ଡ୍ୟ ରାଜାମାନଙ୍କ

ମଧ୍ୟରୁ କେତେକ ଜୈନ ମତ ଓ ଆଉ କେତେକ ବୌଦ୍ଧ ମତ ଗ୍ରହଣ କରିଥିଲେ । ମାତ୍ର ଚୋଳମାନେ ଖାଣ୍ଟି ହିନ୍ଦୁ, ସେମାନଙ୍କର ଶିବ ଇଷ୍ଟ-ଦେବତା । ଦେଶରେ ସବୁ ଧର୍ମର ଲୋକେ ବନା ଅପତ୍ତିରେ ବାସ କରୁଥିଲେ । ପଲ୍ଲବମାନଙ୍କ ରାଜତ୍ୱ ଦ୍ୱିତୀୟ ଶତାବ୍ଦୀରେ ଆରମ୍ଭ ହୋଇ-ଥିଲା । ଏମାନେ ବିଦେଶରୁ ଆସିଥିବା କଥା ଇତପୂର୍ବେ କହାଯାଇ ଅଛି । ପଲ୍ଲବ ରାଜ୍ୟର ରାଜଧାନୀ କାଞ୍ଚୀ । ପଲ୍ଲବ ରାଜାମାନେ କ୍ରମେ ଉତ୍ତର ଦିଗରେ ସେମାନଙ୍କ ରାଜ୍ୟ ବିସ୍ତାର କରିଥିଲେ । ଏମାନେ ଅନେକ ଦେବାଳୟ ନିର୍ମାଣ କରି ଅଛନ୍ତି । ମହାବଳିପୁରରେ ଯେଉଁ ପ୍ରଶସ୍ତ ଦେବାଳୟ ଅଛି, ତାହା ପଲ୍ଲବରାଜା ନରସିଂହଙ୍କ ସମୟରେ ନିର୍ମାଣ କରାଯାଇ ଥିଲା । ଏହି ଦେବାଳୟରେ ଯେଉଁ ସାତୋଟି ପାଗୋଡ଼ା ବା ସ୍ତମ୍ଭ ଅଛି ତାହା ଗୋଟିଏ ଗୋଟିଏ ପଥରରେ ନିର୍ମିତ ହୋଇଥିଲା । କାଞ୍ଚୀରେ ଅନେକ କାରୁକାର୍ଯ୍ୟ ଶୋଭିତ ସୁନ୍ଦର ଦେବାଳୟ ନିର୍ମିତ ହୋଇଥିଲା । ସେଗୁଡ଼ିକ ଏବେ ମଧ୍ୟ ରହି କାଞ୍ଚୀର ଶୋଭା ଦ୍ୱିଗୁଣିତ କରୁଅଛି । କାଞ୍ଚୀ ସହର ଦେବାଳୟମୟ କହିଲେ ଚଳେ ।

ପଲ୍ଲବମାନେ ୭୪୦ରେ ଚାଲୁକ୍ୟ ରାଜାଙ୍କଦ୍ୱାରା ପରାସ୍ତ ହେଲେ । ଏହିଠାରୁ ସେମାନଙ୍କ ଅଧଃପତନର ଆରମ୍ଭ । ପରେ ନବମ ଶତାବ୍ଦୀରେ ଚୋଳମାନେ ସେମାନଙ୍କୁ ପରାସ୍ତ କଲେ । ଏହି ଶତାବ୍ଦୀରେ ପଲ୍ଲବ ରାଜ୍ୟର ବିସ୍ତୃତି ଅତି ଊଣା ହୋଇଗଲା । ଯାହାହେଉ ଏପରି ହୀନ-ଅବସ୍ଥାରେ ମଧ୍ୟ ପଲ୍ଲବରାଜ୍ୟ ବଞ୍ଚି ରହିଥିଲା ।

ଦାକ୍ଷିଣାତ୍ୟର ପଶ୍ଚିମ ଭାଗରେ ଆଉ ଗୋଟିଏ ଜାତି ରାଜତ୍ୱ କରୁଥିଲେ, ଏହା ଚେର ରାଜ୍ୟ । ବର୍ତ୍ତମାନ କୟାମ୍ବତୂର, ତ୍ରିବାଙ୍କୁଡ଼ ଓ ମାଲବାର ଯେଉଁ ସ୍ଥାନରେ ଅଛି, ସେଠାରେ ଏହି ରାଜ୍ୟ ଥିଲା ।

ଦକ୍ଷିଣ ଭାରତରେ ଚେର, ପାଣ୍ଡ୍ୟ ଓ ଚୋଳ ରାଜ୍ୟମାନ ପ୍ରବଳ ଓ ଉନ୍ନତ ଥିବା ବେଳେ, ସେଠାରେ ହିନ୍ଦୁମାନେ ଖୁବ୍ ସଭ୍ୟ, ଶିକ୍ଷିତ, ଉତ୍ସାହୀ ଓ ଉନ୍ନତିପ୍ରିୟ ଥିଲେ । ସେମାନେ ବିଦେଶ-ବାଣିଜ୍ୟ ଯୋଗେ ଅତି ଧନୀ ହୋଇ ସୁଖ ସନ୍ତୋଷରେ ଦିନ ଯାପନ କରୁଥାନ୍ତି । ଧନର ଅତିଶଯ୍ୟରୁ ସେମାନେ ବିବିଧ ଭୋଗ-ବିଳାସରେ ଆସକ୍ତ ରହୁଥିଲେ ।

ଦକ୍ଷିଣ ଭାରତରେ ସେତେବେଳେ ମରିଚ, ମୁକ୍ତା ଇତ୍ୟାଦି ବହୁ ପରିମାଣରେ ଅମଦାନି କରାଯାଉଥାଏ । ଏ ସମସ୍ତ ଜିନିଷ ବିଦେଶିମାନଙ୍କୁ ଭାରତ ପ୍ରତି ଆକୃଷ୍ଟ କରିପାରି ଥିଲା; ପ୍ରଧାନତଃ ରୋମର ବଣିକମାନେ ଏ ସକଳ ପଦାର୍ଥ କିଣି ନେଉଥାନ୍ତି । ଦକ୍ଷିଣ ଭାରତରେ ରୋମୀୟ ମୁଦ୍ରାର ପ୍ରଚଳନ ଥିଲା । ସେହି ସମୟରେ ହିନ୍ଦୁଙ୍କର ବଡ଼ ବଡ଼ ଜାହାଜ ଥିଲା—ସେଥିରେ ବାଣିଜ୍ୟ ଓ ଯୁଦ୍ଧ ଚାଲୁଥିଲା ।

ଲୋକେ ସେହି ଯୁଗରେ ଖୁବ୍ ସାହିତ୍ୟସେବୀ, ବିଦ୍ୟାପ୍ରିୟ ଓ ବିଦ୍ୱାନ୍ ଥିଲେ । କୃଷି, ବାଣିଜ୍ୟ, ବ୍ୟବସାୟ, ସାହିତ୍ୟ, ଶିକ୍ଷା ସଙ୍ଗେ ସଙ୍ଗେ ଶିଳ୍ପାଦି ସୂକ୍ଷ୍ମ କଳାସମ୍ବନ୍ଧର ବି ବିସ୍ତର ଉନ୍ନତି ସାଧିତ ହୋଇ ଥିଲା ।

ଆଦିମ ଯୁଗରେ ଦକ୍ଷିଣଭାରତର, ପ୍ରଧାନତଃ ତାମିଲ ଦେଶର ଧର୍ମ ବା ମତ ଥିଲା ଭୂତ-ପୂଜା, କିନ୍ତୁ ତାହା କ୍ରମେ ଜୈନ ବୌଦ୍ଧ ଓ ହିନ୍ଦୁ ଧର୍ମ ଦ୍ୱାରା ଅନେକଦୂର ମାର୍ଜିତ ହେଲା । ବହୁ ଶତାବ୍ଦୀ ଯାଏ ସେଠାରେ ଜୈନ ଧର୍ମ ପ୍ରବଳ ଥିଲା । ପରେ ଅଶୋକଙ୍କ ଭାଇ ମହେନ୍ଦ୍ର ସେଠାରେ ବୌଦ୍ଧଧର୍ମ ପ୍ରଚାର ଦ୍ୱାରା ବହୁ ଲୋକଙ୍କୁ ସେହି ଧର୍ମରେ ଦୀକ୍ଷିତ କଲେ । କିନ୍ତୁ ୭ମ ଶତାବ୍ଦୀରେ ସେଠାର ବୌଦ୍ଧ ମତ ଜୈନ ଓ ହିନ୍ଦୁଧର୍ମ ପ୍ରଭାବରେ ଏକରକମ ଲୁପ୍ତ ହେବାକୁ ଲାଗିଲା । ଅନେକ ଦେବାଳୟ, ସରୋବର, ପାନ୍ଥଶାଳା, ଚିକିତ୍ସାଳୟ ତିଆରି କରାଯାଇଥିଲା ।

ଭାସ୍କର୍ଯ୍ୟ ଓ ସ୍ଥାପତ୍ୟ ବିଦ୍ୟା ଖୁବ୍ ଉନ୍ନତି ପାଇଥିଲା । ତାଞ୍ଜୋର ଦେବାଳୟ ଏବଂ ସେଥି ମଧ୍ୟରେ ଥିବା ନଟରାଜ (ଶିବ) ମୂର୍ତ୍ତି ତାହାର ଉଜ୍ଜ୍ୱଳ ଉଦାହରଣ । ପୟଃପ୍ରଣାଳୀର ସୁନ୍ଦର ଆୟୋଜନ କରାଯାଉ ଥାଏ । 'ଗଙ୍ଗୈଇ କୋଣ୍ଡାଚୋଳାପୁରମ୍'ର ଜଳପ୍ରଣାଳୀ ସୁପ୍ରସିଦ୍ଧ ।

ସେହି ସମୟରେ ରାଜ୍ୟ ଶାସନ ଉତ୍ତମ, ସଙ୍ଗତ, ସୁଶୃଙ୍ଖଳ ଓ ଲୋକପ୍ରିୟ ଥିଲା । ରାଜାମାନେ ଅତ୍ୟନ୍ତ ପରାକ୍ରମଶାଳୀ ଥିଲେ— ଭାରତର ଭିତରେ ଓ ବାହାରେ ବହୁଦେଶ ଜୟ କରିଥିଲେ । ବିଶେଷତଃ ଚୋଳରାଜାମାନେ ବଡ଼ ପ୍ରତାପଶାଳୀ ଏବଂ ଲୋକପ୍ରିୟ ଗୁଣପୂର୍ଣ୍ଣ ଶାସକ ଥିଲେ । ଉପରୋକ୍ତ ବିବରଣରୁ ସେହି ସମୟର ଦକ୍ଷିଣଭାରତର ସଭ୍ୟତା ସ୍ପଷ୍ଟ ଧରାଯାଏ ।

—:•••:—

## ମହମ୍ମଦ

ମହାପୁରୁଷ ମହମ୍ମଦ ଖ୍ରୀଷ୍ଟପର ୫୭୦ ରେ ଆରବ ଦେଶର ମକ୍କା ନଗରୀରେ ଜନ୍ମଗ୍ରହଣ କରିଥିଲେ । ତାଙ୍କ ଜନ୍ମର ଛ ମାସ ପୂର୍ବେ ତାଙ୍କର ପିତା ମରି ଯାଇଥିଲେ, ଏଣୁ ମାତାଙ୍କ ଉପରେ ମହମ୍ମଦଙ୍କର ସକଳ ଭାର ପଡ଼ିଥିଲା; କିନ୍ତୁ ମହମ୍ମଦଙ୍କର ୫ ବର୍ଷ ବୟସରେ ତାଙ୍କ ମାତା ମଧ୍ୟ ପ୍ରାଣତ୍ୟାଗ କଲେ । ମାତାଙ୍କ ମରଣ ପରେ ସେ ତାଙ୍କ ପିତାମହଙ୍କ ଆଶ୍ରୟରେ କେତେକ ଦିନ ରହିଲେ । ପିତାମହ ମଧ୍ୟ କିଛିଦିନ ଉତ୍ତାରୁ ପ୍ରାଣତ୍ୟାଗ କଲେ; ମହମ୍ମଦଙ୍କୁ ତାଙ୍କ ଜ୍ୟେଷ୍ଠତାତଙ୍କ ଗୃହରେ ରହିବାକୁ ପଡ଼ିଥିଲା । ବାର ବର୍ଷ ବୟସରେ ସେ ପିତୃବ୍ୟଙ୍କ ସଙ୍ଗରେ ବାଣିଜ୍ୟ କରିବାକୁ ସିରିୟା ଦେଶକୁ ଗଲେ । ଏତେ ଅଳ୍ପ ବୟସରୁହିଁ ମହମ୍ମଦଙ୍କର ଧର୍ମରେ ପ୍ରଗାଢ଼ ଶ୍ରଦ୍ଧା ଓ ଭଗବାନଙ୍କଠାରେ ଅଚଳାଭକ୍ତିର ଆରମ୍ଭ ହୋଇଥିଲା । ସେ କେତେକ ନୂତନ ସ୍ଥାନ ଦେଖି ଅତି

ଅନୁଗତ ହେଲେ, ପୁଣି ଖ୍ରୀଷ୍ଟଙ୍କ ମତ' ବିଷୟ ଜାଣିବାକୁ ସେ ଖ୍ରୀଷ୍ଟଧର୍ମ ପୁସ୍ତକ ସବୁ ପଢ଼ିଲେ । ସିରିଆ ଦେଶରେ ବାଣିଜ୍ୟ ଶେଷ ହେଲା ପରେ ଜ୍ୟେଷ୍ଠତାତଙ୍କ ସହ ସେ ମକ୍କାକୁ ଫେରି ଆସିଲେ ।

ମକ୍କାରେ ଖାଦିଜା ନାମରେ ଜଣେ ଧନୀ ବିଧବା ଥିଲେ । ସେ ଧନୀ ହୋଇ ଥିବାରୁ ତାଙ୍କୁ ବିବାହ କରିବାକୁ ଆରବର ଅନେକ ବ୍ୟକ୍ତି ଚେଷ୍ଟା କଲେ, ମାତ୍ର ଖାଦିଜା ବିଧବାବସ୍ଥାରେ ରହି ଅତି ପବିତ୍ର ଭାବରେ ଜୀବନଯାପନ କରିବାକୁ ଲାଗିଲେ । ତାଙ୍କର ବାଣିଜ୍ୟ ଚଳାଇବାକୁ ଜଣେ ପୁରୁଷବ୍ୟକ୍ତି ଆବଶ୍ୟକ ଥିଲା । ମହମ୍ମଦଙ୍କର ଉତ୍ତମ ଚରିତ୍ର ଦେଖି ଖାଦିଜା ତାଙ୍କୁ ବାଣିଜ୍ୟରେ ନିଯୁକ୍ତ କଲେ । କେତେ ଦିନ ମହମ୍ମଦ ସୁଗୃହୁରୂପେ ନିଜର କାର୍ଯ୍ୟ କରିବାକୁ ଲାଗିଲେ । ତାଙ୍କର କର୍ମକୁଶଳତା, ଧର୍ମଭାବ ଓ ଈଶ୍ୱରଭକ୍ତିରେ ମୋହିତ ହୋଇ ଖାଦିଜା ମହମ୍ମଦଙ୍କୁ ବିବାହ କଲେ ।

ମହମ୍ମଦ ବିପୁଳ ସମ୍ପତ୍ତିର ଅଧିକାରୀ ହୋଇ ଧର୍ମରୁ ମତି ଫେରାଇ ନ ଥିଲେ । ବରଂ ତାଙ୍କର ଧର୍ମଭାବ ଅଧିକ ହୋଇଥିଲା । ସେ ନଗର ନିକଟସ୍ଥ ପର୍ବତ ଉପରକୁ ଉଠି ନିର୍ଜନରେ ଧ୍ୟାନ କରୁଥିଲେ । ଦିନେ ଦିନେ ଧ୍ୟାନରତ ହୋଇ ଆହାର ଓ ନିଦ୍ରା ଭୁଲି ଯାଉଥିଲେ । ସେ ଈଶ୍ୱରଙ୍କୁ ପାଇବାକୁ, ଭଗବାନଙ୍କ ବିଷୟ ଜାଣିବାକୁ ଦୃଢ଼ସଙ୍କଳ୍ପ କରିଥିଲେ । ସେ ହେତୁରୁ ତାଙ୍କୁ କୌଣସି ବାଧା ଜଣା ଯାଉ ନ ଥିଲା । ସେ ଏପରି ଅନେକ ଦିନ ଧ୍ୟାନରତ ହୋଇ ଶେଷରେ ଜ୍ଞାନ ପ୍ରାପ୍ତ ହୋଇଥିଲେ । ତାଙ୍କର ବୋଧ ହେଲା ଯେପରି ଈଶ୍ୱର ସ୍ୱୟଂ ଆଜ୍ଞା ଦେଇ ଅଛନ୍ତି । ତାଙ୍କ କର୍ଣ୍ଣରେ ଗୋଟିଏ ଗମ୍ଭୀର ଧ୍ୱନି ଶୁଭିଲା । ସେ ଭାବିଲେ ଯେ, 'ଜଗତରେ ଈଶ୍ୱର ଏକ, ଏହା ପ୍ରଚାର କରିବା ନିମନ୍ତେ ଭଗବାନ ଆଜ୍ଞା ଦେଉଅଛନ୍ତି ।' ସେତେବେଳକୁ ତାଙ୍କର

୪୦ ବର୍ଷ ବୟସ । ସେ ଏହି ବୟସରେ ଇସଲାମ ଧର୍ମପ୍ରଚାରକୁ ଜୀବନର ବ୍ରତକରି ନାନାସ୍ଥାନକୁ ଯିବାକୁ ଲାଗିଲେ । ତାଙ୍କର ଧର୍ମୋପଦେଶ ଶ୍ରବଣ କରି ସର୍ବ ପ୍ରଥମେ ଖାଦିଜା ଏହି ନୂତନ ଧର୍ମ ଗ୍ରହଣ କଲେ । ମାତ୍ର ନୂତନ ଧର୍ମ ପ୍ରଚାରରେ ଅନେକ ବିଘ୍ନ ଘଟିଥିଲା । ବାଧା ବିଘ୍ନ ନ ମାନି ମହମ୍ମଦ ତାଙ୍କର ନୂତନ ମତ ଲୋକଙ୍କୁ ବୁଝାଇବାକୁ ଲାଗିଲେ ।

ଆରବଦେଶର ସାମାଜିକ ଅବସ୍ଥା ଅତି ମନ୍ଦ ଥିଲା । ସେମାନେ ଏକ ଈଶ୍ୱର ପୂଜା ନ କରି ଅନେକ ଦେବତା ପୂଜା କରୁଥିଲେ । ପ୍ରତିମା-ପୂଜା ପ୍ରଚଳିତ ଥିଲା । ରାଜ୍ୟଟି କୌଣସି ଜଣେ ରାଜାଙ୍କ ଅଧୀନରେ ନ ଥିବାରୁ ପ୍ରଜାମାନଙ୍କ ମଧ୍ୟରେ ଏକତା ନ ଥିଲା । ପରସ୍ପର ବିରୋଧ ହେଉଥିବାରୁ ଦେଶରେ ଶାନ୍ତି ନ ଥିଲା । ପ୍ରଜାମାନଙ୍କର ଆଚାର ମଧ୍ୟ ଅତି ଖରାପ ଥିଲା, ସେମାନେ ଅତ୍ୟଧିକ ମଦ୍ୟପାନ କରୁଥିଲେ । ବ୍ୟଭିଚାର ସେମାନଙ୍କ ପକ୍ଷରେ ଦୂଷଣୀୟ ହୋଇ ନ ଥିଲା । ନରହତ୍ୟା ଓ ଦସ୍ୟୁବୃତ୍ତିକୁ ଅନେକ ଲୋକ ଜୀବନୋପାୟ କରିଥିଲେ । ପ୍ରଜାମାନଙ୍କର ଏପରି ଅବସ୍ଥାରେ ମହମ୍ମଦ ସେମାନଙ୍କୁ ବୁଝାଇଲେ, "ସଂସାରରେ ଜଣେ କେବଳ ଈଶ୍ୱର । ତାଙ୍କ ବ୍ୟତୀତ ଆଉ କାହାକୁ ପୂଜା କର ନାହିଁ ।" ଏହି କଥାର ଅର୍ଥ କେତେକ ଲୋକ ବୁଝି ପାରିଲେ ନାହିଁ । ଖାଦିଜାଙ୍କ ପରି କେତେ ଧର୍ମ-ପ୍ରାଣ ବ୍ୟକ୍ତି କେବଳ ଏହି ନୂତନ ଧର୍ମ ଆନନ୍ଦରେ ଗ୍ରହଣ କଲେ । ଦୁଷ୍ଟ ଅବିଶ୍ୱାସୀ ଲୋକେ ମହମ୍ମଦଙ୍କ ଉକ୍ତିକୁ ଭଲେ ବିଶ୍ୱାସ ନ କରି ତାଙ୍କ ବିରୁଦ୍ଧରେ ଅନେକ ଅସାର କଥା କହିଲେ । କେତେ ଲୋକ ତାଙ୍କୁ ବାତୁଳ ବୋଲି କହିଲେ । ଆଉ କେତେ ତାଙ୍କୁ ଭୟ ଦେଖାଇଲେ । ମାତ୍ର ମହମ୍ମଦ ଏମାନଙ୍କୁ ଭଲେ ମାତ୍ର ଭ୍ରୂକ୍ଷେପ ନ କରି ତାଙ୍କର ଧର୍ମ ପ୍ରଚାର କରି-

ବାକୁ ଲାଗିଲେ । ମକ୍କା ନଗରେ ଦୁଷ୍ଟ ଲୋକଙ୍କର ଦୌରାତ୍ମ୍ୟ ଅଧିକ ହେଲା; ସେମାନେ ମହମ୍ମଦଙ୍କୁ ନାନା ପ୍ରକାର ବାଧା ଦେବାକୁ ଲାଗିଲେ । ଏପରି ଅବସ୍ଥାରେ ମହମ୍ମଦଙ୍କ ପତ୍ନୀ ପ୍ରାଣତ୍ୟାଗ କଲେ ।

ମକ୍କା ନଗରୀରେ ସହାୟଶୂନ୍ୟ ହୋଇ ମହମ୍ମଦ ମଦୀନା ନାମକ ଅନ୍ୟ ଏକ ନଗରକୁ ବାହାରି ଗଲେ । ମଦୀନାର ଅଧିବାସିମାନେ ଦଳ ଦଳ ହୋଇ ଆସି ମହମ୍ମଦଙ୍କର ଉପଯୁକ୍ତ ଅଭ୍ୟର୍ଥନା କଲେ ଏବଂ ମହା-ସମାରୋହରେ ତାଙ୍କୁ ନଗର ଭିତରକୁ ନେଲେ । ଏହି ଘଟନା ୬୨୨ ଖ୍ରୀଷ୍ଟାବ୍ଦରେ ଘଟିଥିଲା, ମହମ୍ମଦୀୟମାନେ ଏହି ଦିନଠାରୁ ସେମାନଙ୍କର ବର୍ଷ ଗଣନା କରନ୍ତି । ମହମ୍ମଦୀୟମାନଙ୍କ ହିସାବରେ ଏବେ ୧୯୩୧ ନ ହୋଇ (୧୯୩୧ — ୬୨୨) ୧୩୦୯ ବର୍ଷ ହେବ । ଏହା ୧୩୦୯ 'ହିଜରି'ବୋଲି ଲେଖାଯାଏ । ମଦୀନାରେ ଈଶ୍ୱରଙ୍କୁ ପ୍ରାର୍ଥନା କରିବା ନିମନ୍ତେ ଗୋଟିଏ ମସ୍‌ଜିଦ ନିର୍ମିତ ହେଲା । ମହମ୍ମଦଙ୍କ ଅନୁଚରମାନେ ଏଠାରେ ମିଳି ଭଗବାନଙ୍କୁ ସ୍ମରଣ କରୁଥିଲେ । କ୍ରମେ ମହମ୍ମଦୀୟଙ୍କ ସଂଖ୍ୟା ଅଧିକ ହେଲା । ମହମ୍ମଦ ମଦୀନାକୁ ଆସି ନିଶ୍ଚିନ୍ତ ନ ଥିଲେ; କାରଣ ମକ୍କାରେ ଦୁଷ୍ଟଗଣ ତାଙ୍କ ଅନୁଚରମାନଙ୍କୁ ବହୁତ ପୀଡ଼ା ଦେଉଥିଲେ । ଏଣୁ ସେ ସେମାନଙ୍କର କଷ୍ଟ ଦୂର କରି ଦୁଷ୍ଟଗଣଙ୍କୁ ଉପଯୁକ୍ତ ଶାସ୍ତି ଦେବାକୁ ଇଚ୍ଛା କଲେ । ସେ କେତେକ ସୈନ୍ୟ ସଂଗ୍ରହ କରି ମକ୍କା ନଗରକୁ ଯୁଦ୍ଧୋଦ୍ଦେଶ୍ୟରେ ଯାତ୍ରା କଲେ । ମକ୍କାରେ ଯୁଦ୍ଧ ହେଲା । ମକ୍କା ମହମ୍ମଦଙ୍କର ଅଧୀନ ହେଲା । ତାଙ୍କର ଶତ୍ରୁମାନେ ପରାଜିତ ହେଲେ । ମହମ୍ମଦଙ୍କର ମକ୍କା ଆକ୍ରମଣ ଦେଖି ସମସ୍ତେ ତ୍ରସ୍ତ ହେଲେ । ଯୁଦ୍ଧଦ୍ୱାରା ଇସଲାମ ଧର୍ମ-ପ୍ରଚାର ଏହି ସମୟ ଠାରୁ ଆରମ୍ଭ ହେଲା । ଲୋକେ ମଧୁର କଥା ନ ଶୁଣିଲେ ଯୁଦ୍ଧ କରିବାହିଁ ତାହାର ପ୍ରତିକାର ବୋଲି ସ୍ଥିର ହେଲା । ମହମ୍ମଦ ଧର୍ମ ନିମନ୍ତେ ଯୁଦ୍ଧ କଲେ ପାପ ନାହିଁ ବୋଲି ଉପଦେଶ ଦେଲେ । ମକ୍କା ଯୁଦ୍ଧ ଉତ୍ତାରୁ

ଇସ୍‌ଲାମଧର୍ମୀଙ୍କ ସଂଖ୍ୟା ଅତି ଶୀଘ୍ର ବଢ଼ିବାକୁ ଲାଗିଲା । ମହମ୍ମଦ ଗୋଟିଏ ଧର୍ମ ପୁସ୍ତକ ଲେଖିଲେ, ଏହି ଧର୍ମ ପୁସ୍ତକର ନାମ 'କୋରାଣ' । ମହମ୍ମଦୀୟମାନେ କହନ୍ତି ଯେ, ଏହା ଜଣେ ଅଲ୍ଲା (ସେମାନେ ଭଗବାନଙ୍କୁ ଅଲ୍ଲା କହନ୍ତି) ମହମ୍ମଦଙ୍କୁ କହିଥିଲେ । ମହମ୍ମଦ ୬୩୨ ଖ୍ରୀଷ୍ଟାବ୍ଦରେ ପ୍ରାଣତ୍ୟାଗ କଲେ, ମାତ୍ର ତାଙ୍କ ପ୍ରତିଷ୍ଠିତ ଧର୍ମ ଚିରଦିନ ରହିଲା ।

ଆରବବାସୀମାନେ ସେମାନଙ୍କର ପୂର୍ବ କୁସଂସ୍କାର ଓ ଦୁରାଗ୍ରହ ତ୍ୟାଗ କରି ମହମ୍ମଦଙ୍କ ପ୍ରଣୀତ ନୂତନ ଧର୍ମ ଗ୍ରହଣ କଲେ । ସେମାନେ କ୍ରମେ କ୍ରମେ ଏକତ୍ର ହେଲେ । ସମସ୍ତ ଆରବ ଦେଶ ଜଣେ ରାଜାର ଅଧୀନରେ ରହିଲା । ପ୍ରଜାମାନଙ୍କ ବିରୋଧ ଭାବ କ୍ରମେ ତିରୋହିତ ହେଲା, ମହମ୍ମଦୀୟମାନେ ଗୋଟିଏ ଧର୍ମରେ ରହି ଜାତୀୟ ଏକତା ରଖିବାରୁ ସେମାନଙ୍କର ଦେଶ ଉନ୍ନତ ହେଲା, ଧର୍ମ ସକାଶେ ଶତ୍ରୁମାନଙ୍କ ପ୍ରାଣନାଶ କରିବା ମନା ନ ଥିବାରୁ ସେମାନେ ଅନେକ ଯୁଦ୍ଧ କଲେ । ମହମ୍ମଦୀୟ ଯୋଦ୍ଧାମାନେ ଦେଶ ବିଦେଶ ଜୟ କଲେ । ଆରବରୁ ଇସ୍‌ଲାମ ଧର୍ମ ବାହାରି ଆଫ୍ରିକା ଓ ଇଉରୋପ ଦେଶରେ ପ୍ରସାରିତ ହେଲା । ଧର୍ମ ନିମନ୍ତେ ଯୁଦ୍ଧ କଲେ ପୁଣ୍ୟ ବୋଲି ସେମାନଙ୍କର ବିଶ୍ୱାସ । ଏଣୁ ବିଧର୍ମୀମାନଙ୍କ ସହିତ ଯୁଦ୍ଧ କରି ସେମାନଙ୍କୁ ନିଜ ଧର୍ମରେ ମିଶାଉଥିଲେ । ଏପରି ଯୁଦ୍ଧ ଦ୍ୱାରା ମୁସଲମାନ ଧର୍ମ ସଙ୍ଗେ ସଙ୍ଗେ ମୁସଲମାନ ରାଜ୍ୟ ମଧ୍ୟ ଚତୁର୍ଦ୍ଦିଗରେ ବିସ୍ତାର ଲାଭ କଲା ।

ଆରବୀୟମାନେ ମହମ୍ମଦଙ୍କ ଧର୍ମ ଗ୍ରହଣ କଲେ । ପରେ ସେମାନେ ଗୋଟିଏ ସଭ୍ୟ ଜାତି ହୋଇଥିଲେ । ସେମାନଙ୍କ ଜ୍ଞାନର ବିଶେଷ ଉନ୍ନତି ହୋଇଥିଲା । ସେମାନଙ୍କ ମଧ୍ୟରେ ଅନେକ ବିଜ୍ଞାନବିତ୍, ପଣ୍ଡିତ ଅନେକ ନୂତନ ପୁସ୍ତକ ରଚନା କଲେ । ବୈଦ୍ୟଶାସ୍ତ୍ର ପ୍ରଭୃତି ଏମାନଙ୍କୁ ଭଲ ଜଣା ଥିଲା । ଏମାନଙ୍କର ଭାଷା ଓ ସାହିତ୍ୟର ଅଭିବୃଦ୍ଧି

ହେଲା । ବିଦେଶୀୟମାନଙ୍କ ସଂସ୍ରବରେ ଆସିବାରୁ, ପରସ୍ପର ଜ୍ଞାନ ଆଦାନ ପ୍ରଦାନ ହେଉଥିବାରୁ ଉଭୟ ଜାତିର ମହୋପକାର ହୋଇଥିଲା । ଆରବୀୟମାନଙ୍କଠାରୁ ତୁର୍କିମାନେ ଇସଲାମ ଧର୍ମ ଅବଲମ୍ବନ କଲେ । ପରେ ତୁର୍କିମାନେ ଆରବୀୟମାନଙ୍କୁ ପରାସ୍ତ କଲେ । ତୁର୍କି ସାମ୍ରାଜ୍ୟ ବହୁଦୂର ବ୍ୟାପିଥିଲା ।



## ଦଶମ ଶତାବ୍ଦୀରେ ଭାରତର ଅବସ୍ଥା

ହିନ୍ଦୁଜାତି ଜଗତରେ ପ୍ରଧାନ ଗୋଟିଏ ପ୍ରାଚୀନ ଜାତି । ଅନ୍ୟାନ୍ୟ ଦେଶରେ ଯେତେବେଳେ ଲୋକେ ନିତାନ୍ତ ଅସଭ୍ୟାବସ୍ଥାରେ ଥିଲେ, ସେତେବେଳେ ହିନ୍ଦୁଜାତି ଖୁବ୍ ସଭ୍ୟ, ଉନ୍ନତ । ବୈଦିକ ଯୁଗର ହିନ୍ଦୁମାନଙ୍କ ସଭ୍ୟତା ସମ୍ବନ୍ଧରେ ଏଥିପୂର୍ବେ କହାଯାଇଅଛି । ସେତେବେଳେ ସେମାନଙ୍କର ଅନେକ ଗ୍ରନ୍ଥ ଲେଖାଯାଇଥିଲା । ଏହି ସମସ୍ତ ପୁସ୍ତକ ପାଠକଲେ ହିନ୍ଦୁଜାତିର ଜ୍ଞାନ କେତେଦୂର ଉନ୍ନତ ଓ ମାର୍ଜିତ ଥିଲା, ତାହା ସ୍ପଷ୍ଟ ଜଣାପଡ଼େ ।

ମୌର୍ଯ୍ୟ ଯୁଗରେ ମଧ୍ୟ ହିନ୍ଦୁ ସଭ୍ୟତା କମ୍ ନ ଥିଲା । ସେତେବେଳେ ଭାରତର ନୈତିକ, ସାମାଜିକ ଓ ରାଜନୈତିକ ଅବସ୍ଥାର ବଡ଼ ପରିବର୍ତ୍ତନ ଘଟିଲା । ବୌଦ୍ଧମତର ପ୍ରାବଲ୍ୟ ଯୋଗୁଁ ହିନ୍ଦୁଧର୍ମ କିଛିତ୍ ସ୍ଥଗିତ ରହିଲା । ମୌର୍ଯ୍ୟ ଯୁଗ ପରେ ଗୁପ୍ତମାନେ ଭାରତରେ ସେମାନଙ୍କର ସୁଦୃଢ଼ ସାମ୍ରାଜ୍ୟ ସ୍ଥାପନ କଲେ । ଗୁପ୍ତରାଜାମାନେ ସମସ୍ତେ ହିନ୍ଦୁ । ଏମାନଙ୍କ ସମୟରେ ହିନ୍ଦୁ ଧର୍ମର ପୁନରୁତ୍ଥାନ ହେଲା ଏବଂ ସୁଶାସନରେ ଦେଶର ଅବସ୍ଥା ତୃପ୍ତିଜନକ ହେଲା । ଗୁପ୍ତଯୁଗରେ ସଂସ୍କୃତ ସାହିତ୍ୟର ଯେତେ ଦୂର ଅଭିବୃଦ୍ଧି ଘଟିଥିଲା, ଅନ୍ୟ କୌଣସି ସମୟରେ ସେପରି ହୋଇନାହିଁ । ଏହି ଯୁଗରେହିଁ ମହାକବି କାଳିଦାସ ତାଙ୍କର

ବିଖ୍ୟାତ କାବ୍ୟ ଓ ନାଟକମାନ ଲେଖିଥିଲେ । ସାହିତ୍ୟ ବ୍ୟତୀତ ଶିଳ୍ପ ଓ କାରୁକାର୍ଯ୍ୟରେ ମଧ୍ୟ ଭାରତ ପଶ୍ଚାତ୍ପଦ ନ ଥିଲା । ଅଜନ୍ତା ଗୁହାର ସୁନ୍ଦର ଚିତ୍ର ସବୁ ଏହି ସମୟରେହିଁ ଅଙ୍କିତ ହୋଇଥିଲା ।

ଗୁପ୍ତବଂଶର ବିନାଶ ପରେ ଭାରତବର୍ଷ ଶକ ଜାତିର ଅଧୀନରେ ଆସିଲା । ଏହି ଜାତିର ସର୍ବପ୍ରଧାନ ରାଜା କନିଷ୍କ । କନିଷ୍କଙ୍କ ଉତ୍ସାହ-ବଳରେ ଦେଶରେ ଜ୍ଞାନ-ଚର୍ଚ୍ଚା ବୃଦ୍ଧି ପାଇଲା । ସେତେବେଳେ ଚରକ ତାଙ୍କର ଉପାଦେୟ ବୃହତ୍ ଆୟୁର୍ବେଦ ଶାସ୍ତ୍ର ରଚନା କରିଥିଲେ । ବୁଦ୍ଧଦେବଙ୍କର ବହୁ ସୁନ୍ଦର ପ୍ରତିମା ନିର୍ମିତ ହୋଇଥିଲା ।

ରାଜପୁତମାନେ ଭାରତରେ ୧୦ମ ଶତାବ୍ଦୀରେ ସେମାନଙ୍କ ରାଜ୍ୟ ସ୍ଥାପନ କଲେ । ଯୁଦ୍ଧଦ୍ୱାରା ସେମାନେ ନିଜ କ୍ଷମତା ବଜାୟ ରଖି-ଥିଲେ । ସେମାନଙ୍କର ସାହସ, ପରାକ୍ରମ ଓ ରଣନୈପୁଣ୍ୟ ଜଗତରେ ଅତି ବିରଳ । କେବଳ ଯୁଦ୍ଧବଳରେ ସେମାନେ ସମଗ୍ର ଭାରତରେ ଆଧିପତ୍ୟ ବିସ୍ତାର କରି ପାରିଥିଲେ ।

ଭାରତର ସକଳ ବିଷୟରେ ଏପରି ଉନ୍ନତି ହେଲେହେଁ, ୧୦ମ ଶତାବ୍ଦୀର ଶେଷ ଭାଗରେ ଭାରତ ତୁର୍କି ଓ ପଠାଣଙ୍କର ଅଧୀନସ୍ଥ ହେଲା । କାରଣ ଭାରତବାସିଙ୍କ ମଧ୍ୟରେ ଏକତାର ଅଭାବ । ଐକ୍ୟ ହୀନ ହୋଇ ଭାରତୀୟମାନେ ପ୍ରତ୍ୟେକ ଯୁଗରେ ବିଦେଶିର ପଦଦଳିତ ହୋଇ ଆସୁଛନ୍ତି । ରାଜପୁତମାନେ ସାହସୀ, ପରାକ୍ରମୀ ଓ ନୀତିନିପୁଣ ଥିଲେ ସତ୍ୟ, କିନ୍ତୁ ସେମାନଙ୍କ ମଧ୍ୟରେ ଏକତା ନ ଥିଲା । ରାଠୋର ଜାତି ସହିତ ଚୌହାନ ଜାତିର ମନ ମିଳୁ ନ ଥିଲା । ସୋଲାଙ୍କି ରାଜା-ମାନେ ଶିଶୋଦୀୟବଂଶର ଶତ୍ରୁ ଥିଲେ । ଏପରି ପରସ୍ପର ବିରୋଧରେ ଦେଶ ଖଣ୍ଡବିଖଣ୍ଡ ହୋଇଗଲା । ବିଦେଶରୁ ଶତ୍ରୁ ଆସି ଗୋଟିଏ ରାଜ୍ୟ

ଆକ୍ରମଣ କଲେ, ସକଳ ରାଜା ମିଳିମିଶି ଶତ୍ରୁ ସଙ୍ଗେ ଲଢ଼ୁ ନ ଥିଲେ ; ଅଧିକରେ, କେହି କେହି ସ୍ୱାର୍ଥ ସିଦ୍ଧି ପାଇଁ ଶତ୍ରୁର ପକ୍ଷ ଧରୁଥାନ୍ତି । ଏଣୁ କ୍ରମେ ବିଦେଶୀ ରାଜାମାନେ ଆମ ଦେଶ ଅଧିକାର କରି ବସିଲେ ।

ପଠାଣମାନଙ୍କ ମଧ୍ୟରେ ବିସ୍ତର ଉତ୍ସାହ, ଜାତୀୟ ମମତା, ସ୍ୱଧର୍ମ ପ୍ରୀତି ଓ ଐକ୍ୟ ଥିଲା । ସେମାନେ ଆସିଥିଲେ ପାହାଡ଼ମୟ ଦେଶରୁ । ଜୀବନରେ ସେମାନେ ବହୁ କଷ୍ଟ ସହିଥିଲେ । ଏଣୁ ସେମାନେ ବିଶୃଙ୍ଖଳ ରାଜପୁତ ଜାତିକୁ ନିଷ୍ପ୍ରଭ କରି ଦେଇ ଆମ ଦେଶ ଅଳ୍ପେ ଅଳ୍ପେ ଅଧିକାର କରି ନେଲେ ।



## ଘଜନିର ମହମ୍ମଦ

ବିଦେଶୀମାନଙ୍କଦ୍ୱାରା ଭାରତବର୍ଷ କିପରି ବାରମ୍ବାର ଆକ୍ରାନ୍ତ ହୋଇଥିଲା, ତାହାର କେତେକ କାରଣ ଗତ ଅଧ୍ୟାୟରେ ବର୍ଣ୍ଣିତ ହୋଇଅଛି । ତାହା ଛଡ଼ା ବୈଦେଶିକ ଆକ୍ରମଣର କେତେ ଗୋଟି ଭୌଗଳିକ କାରଣ ମଧ୍ୟ ଦିଆଯାଇ ପାରେ ।

ଅଲେକ୍‌ଜଣ୍ଡରଙ୍କ ସମୟଠାରୁ ପଠାଣମାନଙ୍କ ସମୟ ପର୍ଯ୍ୟନ୍ତ, ଭାରତକୁ ମଧ୍ୟ-ଆସିଆଦିଗରୁ ହିଁ ଶତ୍ରୁମାନେ ଆସି ଚଢ଼ାଉ କରୁଥାନ୍ତି । ମଧ୍ୟ-ଅସିଆ, ପାରସ୍ୟ ଓ ଅଫଗାନସ୍ଥାନ ବନ ଓ ପର୍ବତରେ ପୂର୍ଣ୍ଣ । ଏଣୁ ସେହି ସେହି ଦେଶରେ ଖାଦ୍ୟର ଏକାନ୍ତ ଅଭାବ । ସେହି ତିନ ଦେଶର ଲୋକେ ଯଥେଷ୍ଟ ଖାଦ୍ୟ ପାଇ ଅନ୍ୟ ସ୍ଥାନକୁ ଯିବାକୁ ବାଧ୍ୟ ହେଲେ ।

ସେମାନେ ସେମାନଙ୍କ ଦେଶର ପଶ୍ଚିମଦିଗକୁ ନ ଯାଇ, ପୂର୍ବଦିଗକୁ ଆସିଲେ କାହିଁକି ? ତାହାର ପ୍ରଧାନ କାରଣ ଆମ ଦେଶର

ଉର୍ବରତା । ଗଙ୍ଗା ଓ ସିନ୍ଧୁ ନଦୀ ଯୋଗେ ହିନ୍ଦୁସ୍ଥାନ ବା ଆର୍ଯ୍ୟାବର୍ତ୍ତରେ ବହୁ ଶସ୍ୟ ଉତ୍ପନ୍ନ ହୁଏ, ପ୍ରଚୁର ଧନ ଆଦାୟ ହୁଏ । ଏଣୁ ଭାରତ ଉପରେ ବିଦେଶିମାନଙ୍କର ଲୋଭ-ଦୃଷ୍ଟି ପଡ଼ିଲା । ଭାରତର ଉତ୍ତର-ପଶ୍ଚିମ କୋଣରେ ଖାଇବର୍ ଓ ବୋଲାନ୍ ନାମରେ ଦୁଇଗୋଟି ପ୍ରଶସ୍ତ ଗିରି-ମାର୍ଗ ଅଛି । ଏହି ଦୁଇ ମାର୍ଗରେ ହିଁ ଭାରତକୁ ଆସିବାରେ ବିଦେଶିମାନଙ୍କର ବଡ଼ ସୁବିଧା ଘଟିଲା ।

ଘଜନୀଦେଶ ଭାରତବର୍ଷର ବାୟୁବ୍ୟ ପ୍ରାନ୍ତରେ ଅବସ୍ଥିତ । ଦଶମ ଶତାବ୍ଦୀରେ ଶେଷ ଭାଗରେ ଏହି ଦେଶରେ ସବକ୍ତଜୀନ ରାଜା ହୋଇ-ଥିଲେ । ୯୮୬ ସାଲରେ ସେ ଭାରତର ଦୁରବସ୍ଥା ଓ ଅନୈକ୍ୟ ଦେଖି ସୈନ୍ୟ ଧରି ପଞ୍ଜାବ ଦେଶକୁ ଆସିଲେ । ସେହି ସମୟରେ ଜୟପାଳ ଭାଟିଣ୍ଡାର ରାଜା । ଜୟପାଳ ଓ ସବକ୍ତଜୀନ ମଧ୍ୟରେ ଯୁଦ୍ଧ ହେଲା; ଦୁଇବର୍ଷ ଉତ୍ତାରୁ ଜୟପାଳ ସବକ୍ତଜୀନଙ୍କର ଦେଶ ଆକ୍ରମଣ କଲେ, ମାତ୍ର ପରାସ୍ତ ହୋଇ ତାଙ୍କୁ ସ୍ୱଦେଶକୁ ଫେରିବାକୁ ହୋଇଥିଲା । ଜୟପାଳ ହତୋତ୍ସାହ ନ ହୋଇ ଆଉ କେତେକ ରାଜପୁତ ରାଜାଙ୍କୁ ଏକତ୍ର କଲେ । ଏକତ୍ରିତ ରାଜପୁତ ସୈନ୍ୟ ଓ ସବକ୍ତଜୀନଙ୍କ ସୈନ୍ୟ ମଧ୍ୟରେ ପଞ୍ଜାବ ଦେଶର କୁରମ ଉପତ୍ୟକା ନିକଟରେ ଯୁଦ୍ଧ ହେଲା । ମିଳିତ ରାଜପୁତ ସେନା ଧୈର୍ଯ୍ୟ ସହକାରେ ଯୁଦ୍ଧ କଲେ ମଧ୍ୟ ପଠାଣ-ମାନେ ଜିଣିଥିଲେ; ଏହି ଜୟ ଦ୍ୱାରା ପେଶାବାର ସବକ୍ତଜୀନଙ୍କ ଅଧୀନସ୍ଥ ହେଲା ।

୯୯୭ରେ ସବକ୍ତଜୀନଙ୍କ ମୃତ୍ୟୁ ଘଟିଲା, ତାଙ୍କର ପୁଅ ମହମ୍ମଦ ଘଜନୀ ଦେଶର ରାଜା ହେଲେ । ସୁଲତାନ ଘଜନୀ ମହମ୍ମଦ ବୋଲି ସେ ବିଖ୍ୟାତ ଅଟନ୍ତି । ମହମ୍ମଦ ଜଣେ ପ୍ରଗାଢ଼ ଇସଲାମ ଭକ୍ତ । ସେ ଇସଲାମ ଧର୍ମ ନିମନ୍ତେ ଯୁଦ୍ଧ କରିବାକୁ ସର୍ବଦା ପ୍ରସ୍ତୁତ ଥିଲେ । ଭାରତ-

ବର୍ଷର ହିନ୍ଦୁମାନେ ପ୍ରତିମାପୂଜା କରନ୍ତି, ସେମାନଙ୍କର ଧର୍ମ ମୁସଲମାନ ଧର୍ମଠାରୁ ଭିନ୍ନ । ସେ ଭାବିଲେ, ଭାରତୀୟମାନେ ବିଧର୍ମୀ, ଏଣୁ ଘୃଣ୍ୟ; ସେମାନଙ୍କୁ ବଧ କରିବାଦ୍ୱାରା ପାପ ହୁଏ ନାହିଁ ବରଂ ପୁଣ୍ୟ ହୋଇ ଥାଏ । ପ୍ରତିମାପୂଜକ ହିନ୍ଦୁଙ୍କୁ ବଧ କଲେ ସ୍ୱର୍ଗ-ପ୍ରାପ୍ତି ହୁଏ । ଏହି ବିଶ୍ୱାସ ମହମ୍ମଦଙ୍କ ହୃଦୟରେ ବଦ୍ଧମୂଳ ହୋଇଥିଲା, ପୁଣି ତାଙ୍କର ଧନାର୍ଜ୍ଜନରେ ବଳବତୀ ପିପାସା ଥିଲା, ସେ ଜଗତର ସମସ୍ତ ଧନ ନିଜର କରଗତ କରିବାକୁ ଅଭିଳାଷ କରୁଥିଲେ ।

ଭାରତ ଉର୍ବର ଦେଶ, ପ୍ରଜାମାନେ ଧନୀ, ରାଜାମାନଙ୍କ ଭଣ୍ଡାର ଧନରେ ପୂର୍ଣ୍ଣ । ଦେବାଳୟଗୁଡ଼ିକରେ ଧନ ରତ୍ନ ଅନେକ ଅଛି । ଏହି ଦେବାଳୟଗୁଡ଼ିକର ବିନାଶ କଲେ ଦୁଇଟି କାର୍ଯ୍ୟ ଏକାବେଳକେ ସାଧିତ ହୋଇ ପାରେ—ଧନ ଲାଭ ଓ ପୁଣ୍ୟ ଲାଭ; ବିଧର୍ମିର ହତ୍ୟାରେ ପୁଣ୍ୟ ଓ ଦେବାଳୟ ଲୁଟି କରିବା ଧର୍ମ । ମହମ୍ମଦ ସବକ୍ତିଗୀନଙ୍କ ପଥ ଅନୁସରଣ କରିଥିଲେ । ଭାରତବର୍ଷର ଏକତାହୀନ ଅବସ୍ଥା ତାଙ୍କୁ ଭଲ ଜଣାଥିଲା । ଏଣୁ ସେ ଅନେକଥର ଭାରତବର୍ଷକୁ ଆସି ପ୍ରଜାମାନଙ୍କୁ ବଧ କରି ଦେବାଳୟ ପ୍ରାସାଦ ଭଗ୍ନ କରି, ପ୍ରଭୂତ ଧନରତ୍ନ ଘଜନୀ ଦେଶକୁ ନେଇ ଥିଲେ । ସେ ସତରଥର ଏହି ଦେଶକୁ ଆସିଥିଲେ । ରାଜ୍ୟ ବିସ୍ତାର ତାଙ୍କର ଉଦ୍ଦେଶ୍ୟ ନୁହେଁ—ଭାରତବର୍ଷରୁ ଧନ ଚପୁଡ଼ି କରି ନେଇ ଯିବେ, ଏହାକେବଳ ତାଙ୍କର ଆଶା । ସେ ଘଜନୀରୁ ବାହାରି ନାନା ପର୍ବତ ପାହାଡ଼ ଲଙ୍ଘନ କରି ଏ ଦେଶରେ ପ୍ରବେଶ କରୁଥିଲେ, ନିର୍ଦ୍ଦୟଭାବରେ ଲୋକମାନଙ୍କୁ ବଧ କରୁଥିଲେ । ମୃତବ୍ୟକ୍ତିମାନଙ୍କର ସମସ୍ତ ଧନରତ୍ନ ଲୁଣ୍ଠନ କରିବା ପରେ ସେ ସ୍ୱଦେଶକୁ ଗମନ କରୁଥିଲେ । ଘଜନୀ ନଗରର ପ୍ରାସାଦମାନ ନିର୍ମାଣ କରାଇବାକୁ ସେ ଏ ଦେଶରୁ ଅନେକ କାରିଗରଙ୍କୁ ବନ୍ଦୀ କରି ନେଇ ଯାଉଥିଲେ ।

ଏପରି ଭାରତର ଧନ, ଭାରତର କାରିଗର ଓ ସେମାନଙ୍କ ପରିଶ୍ରମରେ ଘଜନୀନଗରୀ ହର୍ମ୍ୟମାଳାରେ ଶୋଭା ପାଉଥିଲା ।

ୡମ ଥର ୧୦୦୧ ରେ ମହମ୍ମଦ ଘଜନୀରୁ ବାହାରି ପଞ୍ଜାବ ଦେଶରେ ପ୍ରବେଶ କଲେ । ପିଶାବାରଠାରେ ସେ ଜୟପାଳଙ୍କୁ ଯୁଦ୍ଧରେ ପରାସ୍ତ କରି ତାଙ୍କୁ ବନ୍ଦୀ କଲେ । ପଛେ ଜୟପାଳ ସନ୍ଧି କରି କାରାମୁକ୍ତ ହେଲେ, ମାତ୍ର ଯୁଦ୍ଧରେ ପରାସ୍ତ ଓ ବିଧର୍ମୀହସ୍ତରେ ବନ୍ଦୀ ହୋଇ-ଥିବାରୁ, ସେ ଲଜ୍ଜିତ ହୋଇ ଅଗ୍ନିରେ ପଡ଼ି ଆତ୍ମହତ୍ୟା କଲେ ।

ତାଙ୍କ ପୁତ୍ର ଅନନ୍ଦପାଳ ପିତାଙ୍କର ଶତ୍ରୁ ମହମ୍ମଦଙ୍କୁ ଦେଶରୁ ତଡ଼ିବାକୁ ଅନ୍ୟ ରାଜପୁତ ରାଜାମାନଙ୍କୁ ଏକତ୍ର କଲେ । ଉଜ୍ଜୟିନୀ, ଗ୍ୱାଲିଅର, କନୋଜ, ଦିଲ୍ଲୀ ଓ ଆଜମୀରର ରାଜପୁତ ସୈନ୍ୟମାନେ ମିଳିତ ହୋଇ ମହମ୍ମଦଙ୍କ ବିପକ୍ଷରେ ଯୁଦ୍ଧ କଲେ । ମହମ୍ମଦ ଏହି ବିପୁଳ-ସେନା ଦେଖି ତ୍ରସ୍ତ ହୋଇ ଖଣ୍ଡେଦୂରରେ ଯୁଦ୍ଧ ନ କରି ଲୁଚି ରହିଲେ । ରାଜପୁତମାନେ ୪୦୦୦ ମୁସଲମାନ ସୈନ୍ୟଙ୍କୁ ନିହତ କଲେ । ପିଶାବାର ଠାରେ ଉଭୟ ପକ୍ଷର ସେନା ୪୦ ଦିନ ରହିଥିଲେ, ହିନ୍ଦୁମାନଙ୍କର ଜୟ ହେବ ବୋଲି ଆଶା ଦେଖା ଯାଉଥିଲା, ଶତ୍ରୁସେନା ସ୍ୱଦେଶକୁ ଫେରିବାକୁ ବସିଥିଲେ, ଏହି ସମୟରେ ରାଜପୁତ ସୈନ୍ୟମାନେ ଛତ୍ରଭଙ୍ଗ ଦେଲେ । କାରଣ ଯେଉଁ ହସ୍ତିରେ ଅନନ୍ଦପାଳ ବସିଥିଲେ, ତାହା ତ୍ରସ୍ତ ହୋଇ ଯୁଦ୍ଧଭୂମିରୁ ପଳାୟନ କଲା । ରାଜପୁତ ସୈନ୍ୟମାନେ ବିଶୃଙ୍ଖଳ ହୋଇ ଇତସ୍ତତଃ ଚାଲିଯିବା ପରେ ଶତ୍ରୁପକ୍ଷର ଅଶ୍ୱାରୋହିଗଣ ଅବସର ପାଇ ଏମାନଙ୍କ ପଛରେ ଗୋଡ଼ାଇ ଆଠହଜାର ସୈନ୍ୟଙ୍କୁ ବଧ କଲେ । ରାଜାମାନେ ଯୁଦ୍ଧରେ ପରାସ୍ତ ହୋଇ ନିଜ ନିଜ ନଗରକୁ ଫେରିଗଲେ, ଶତ୍ରୁବିପକ୍ଷରେ ଠିଆ ହେବାକୁ ଆଉ ସାହସ କଲେ ନାହିଁ । ଏହି ଯୁଦ୍ଧରେ ଜୟଲାଭ କରି ସୁଲତାନ କାଙ୍ଗ୍ରା ଦୁର୍ଗ ଅବରୋଧ କଲେ,

ଦୁର୍ଗ ଭିତରେ ପଶି ମୁସଲମାନମାନେ ପ୍ରଚୁର ଧନ ସମ୍ପଦ ଗୋଟାଇ ଆଣି-ଥିଲେ । ଏହି ଅବରୋଧ ୧୦୦୯ ରେ ହୋଇଥିଲା । ଏଠାରୁ ମହମ୍ମଦ ଅନେକ ସୁନା ଓ ରୂପା ପାଇଥିଲେ । କଥିତ ଅଛି, ତାଙ୍କୁ ଗୋଟିଏ ରୂପାର ଘର ମିଳିଥିଲା, ଘରଟିର ପରିମାଣ ୪୫୦ ବର୍ଗଗଜ । ଘରଟି ଖଣ୍ଡ ହୋଇଛି, ଫିଟାଇଲେ ଫିଟେ; ଯୋଡ଼ି ଦେଲେ ଯୋଡ଼ି ହୁଏ; ସେହି ଘରେ ଯେଉଁ ଚନ୍ଦ୍ରାତପ ଥିଲା, ତାହା ଦୁଇଟି ସୁନାଖମ୍ବ ଓ ଦୁଇଟି ରୂପାଖମ୍ବ ଉପରେ ଟଙ୍ଗାଥିଲା । ଏହା ଛଡ଼ା ସେଥିରେ ଅନେକ ବହୁମୂଲ୍ୟ ଅଲଙ୍କାର, ମଣି, ମୁକ୍ତା, ମୋତି, ବଡ଼ ବଡ଼ ହୀରା ଥିଲା; ମହମ୍ମଦ ଗଜନୀ ଦେଶକୁ ସେ ସବୁ ନେଇଗଲେ । କାଙ୍ଗ୍ରା ଦୁର୍ଗ ଅନେକ ବର୍ଷଯାଏଁ ମୁସଲମାନମାନଙ୍କ ଅଧୀନରେ ରହିଲା ।

ଅଛି ଥରେ ସେ କନାଉଜ ଆକ୍ରମଣ କଲେ ଏବଂ ଯମୁନା-ନଦୀ ପାର ହୋଇ ବୁଲନ୍ଦସହର ନାମକ ରାଜ୍ୟ ଲୁଟି କରିବାକୁ ଉଦ୍ୟତ ହେଲେ । ମାତ୍ର ସେଠାରେ ରାଜା ହରଦତ୍ତ ୧୦,୦୦୦ ଲୋକଙ୍କ ସହିତ ଇସଲାମଧର୍ମ ଗ୍ରହଣ କରି ମହମ୍ମଦଙ୍କର ଶରଣାଗତ ହେଲେ ।

ଏଠାରୁ ସେ ମଥୁରା ନଗରୀକୁ ଗଲେ । ଏହା ଶ୍ରୀକୃଷ୍ଣଙ୍କ ଲୀଳା ସ୍ଥଳୀ—ହିନ୍ଦୁମାନଙ୍କର ଗୋଟିଏ ପ୍ରଧାନ ତୀର୍ଥ ସ୍ଥାନ । ଏଠାରେ ଅନେକ ଦେବାଳୟ ଥିଲା, କେତେ ଦେବ ପ୍ରତିମା ଖାଣ୍ଟି ସୁବର୍ଣ୍ଣ ଓ ମଣିରେ ନିର୍ମିତ । ମହମ୍ମଦଙ୍କ ଆଜ୍ଞାନୁଯାୟୀ ମୁସଲମାନ ସୈନ୍ୟ ନିଆଁ ଲଗାଇ ସବୁ ଦେବାଳୟ ଭୂମିସାତ୍ କଲେ । ମଥୁରା ଧ୍ୱଂସ ପରେ ସେ ୧୦୧୯ ରେ ପୁଣି କନାଉଜ ଆକ୍ରମଣ କଲେ, ହିନ୍ଦୁମାନେ କେତେ ନିହତ ହେଲେ, ଆଉ କେତେ ବନ୍ଦୀ ହେଲେ । ଏହି ସ୍ଥାନମାନ ଲୁଟି କରି ମହମ୍ମଦ ଅବ-ଶେଷରେ ଧନ ରତ୍ନ ଓ ବନ୍ଦୀମାନଙ୍କୁ ଧରି ଗଜନୀକୁ ଫେରିଗଲେ ।

ମହମ୍ମଦ ୧୦୨୩ ରେ ଅଷ୍ଟ ଥରର ଭାରତକୁ ଆସିଲେ । ତାଙ୍କ ପଛେ ୩୦,୦୦୦ ତୁର୍କି ସୈନ୍ୟ । ସେ ପ୍ରଥମେ ମୁଲତାନକୁ ଆସି ସେଠାରୁ ଅଜମୀରରେ ପ୍ରବେଶ କଲେ । ସେଠାରୁ ପୁଣି ଅନହିଲବାଡ଼ ବା ଗୁଜରାଟ ଆଡ଼େ ଅଗ୍ରସର ହେଲେ । ପଥରେ ଗୋଟିଏ ମରୁଭୂମି ଅଛି । ରାଜସ୍ଥାନର ଏହି ମରୁପ୍ରାନ୍ତରରେ ପଠାଣ ସୈନ୍ୟ ବହୁତ କଷ୍ଟ ପାଇଥିଲେ । ସେଠାରେ ଜଳ ଓ ଖାଦ୍ୟର ବିଶେଷ ଅଭାବ, ଖାଦ୍ୟ ଯୋଗାଇବା ନିମନ୍ତେ ମହମ୍ମଦଙ୍କୁ ବହୁ ଧନ ବ୍ୟୟ କରିବାକୁ ପଡ଼ିଥିଲା । ମରୁଦେଶରେ ଯିବାରୁ ସୈନ୍ୟ ଶୀଘ୍ର ଯାଇ ପାରିଲେ ନାହିଁ । ଘଜନୀରୁ ସୋମନାଥ ଦେବାଳୟ ନିକଟକୁ ଯିବାକୁ ସେମାନଙ୍କୁ ଏକବର୍ଷ ଲାଗିଥିଲା । ସୋମନାଥ କାଥିଆବାଡ଼ ବା ଗୁଜରାଟର ଗୋଟିଏ ବିଖ୍ୟାତ ଶିବାଳୟ, ଏହା ସମୁଦ୍ର ନିକଟରେ ଅବସ୍ଥିତ । ଏହି ସ୍ଥାନକୁ ଶିବଙ୍କ ଦର୍ଶନ ସକାଶେ ଅନେକ ହିନ୍ଦୁ ଯାତ୍ରୀ ଆସନ୍ତି । ଭକ୍ତି ଓ ଶ୍ରଦ୍ଧାରେ ଯାତ୍ରିମାନେ ଶିବଙ୍କୁ ଅନେକ ବହୁମୂଲ୍ୟ ଉପହାର ଦେଇଥାନ୍ତି । ଏ ହେତୁରୁ ଏ ମନ୍ଦିରରେ ଅନେକ ଧନ ଥିଲା । ଏହି ଦେବାଳୟରେ ଗୋଟିଏ ପ୍ରସ୍ତର ଶିବଲିଙ୍ଗର ପୂଜା ହେଉଥାଏ । ଘରଟି କାଠରେ ତିଆରି, ଖମ୍ବଗୁଡ଼ିକ ଉପରେ ପିସା ଦିଆ ଯାଇଥିଲା । ଧନ ହରି ନେବା ଉଦ୍ଦେଶ୍ୟରେ ମହମ୍ମଦ ଏହି ସ୍ଥାନକୁ ଆସିଲେ । ମାତ୍ର ସୋମନାଥ ଦେବାଳୟ ରକ୍ଷା କରିବାକୁ ଅନେକ ହିନ୍ଦୁ ସୈନ୍ୟ ଶତ୍ରୁ ସଙ୍ଗେ ଯୁଦ୍ଧ କଲେ । ହିନ୍ଦୁମାନେ ପରାଜିତ ହେଲେ । ଦେବାଳୟଟି ବିଧର୍ମୀ ଶତ୍ରୁଙ୍କର ହସ୍ତଗତ ହେଲା । ଏହି ଯୁଦ୍ଧରେ ୫୦୦୦୦ ଲୋକ ପ୍ରାଣ ହରାଇଥିଲେ । ମହମ୍ମଦ ଦେବାଳୟ ଭିତରେ ପ୍ରବେଶ କରି ସମସ୍ତ ଧନ ସଙ୍ଗରେ ଧରି ଘଜନୀକୁ ଫେରିଲେ । ସେ ଘଜନୀରେ ୧୦୨୬ ସାଲରେ ପ୍ରବେଶ କଲେ । ୧୦୨୭ ରେ ଅନ୍ତିମଥର ମହମ୍ମଦ ପଞ୍ଜାବକୁ ଆସି ମୁଲତାନ ଆକ୍ରମଣ କଲେ । ମହମ୍ମଦ ଆମ୍ଭ ଦେଶକୁ ସତର ଥର ଆସି ମଧ୍ୟ ଏଠାରେ ତାଙ୍କର ରାଜ୍ୟ ବିସ୍ତାର କରି ନ ଥିଲେ

ତାଙ୍କର ରାଜ୍ୟ ବିସ୍ତାରରେ ଅଧିକ ଶ୍ରଦ୍ଧା ନ ଥିଲା । ତାଙ୍କ ଜୀବନରେ ଧନ ସମ୍ପାଦନହିଁ ପ୍ରଧାନ ବ୍ରତ ହୋଇଥିଲା । ମହମ୍ମଦ ଅଧୀନରେ ଭାରତର ପଞ୍ଜାବ ଦେଶ କେବଳ ଥିଲା ।

ମହମ୍ମଦଙ୍କୁ ହିନ୍ଦୁମାନେ ସୁଖ ପାଆନ୍ତି ନାହିଁ । ମାତ୍ର ମୁସଲମାନ୍ ମାନେ ତାଙ୍କର କାର୍ଯ୍ୟକଳାପ ଦେଖି ତାଙ୍କୁ ବହୁତ ପ୍ରଶଂସା କରୁଥାନ୍ତି । ବିଧର୍ମୀଙ୍କୁ ହତ୍ୟା କରି, ପ୍ରତିମା ଓ ଦେବାଳୟମାନ ଭୂମିସାତ୍ କରି ମହମ୍ମଦ ପୁଣ୍ୟ ଅର୍ଜନ କରୁଅଛନ୍ତି ବୋଲି ସେମାନଙ୍କର ବିଶ୍ୱାସ ଥିଲା । ମହମ୍ମଦଙ୍କ ଜୀବନର ପ୍ରଧାନ ଆଶା—ଧନ ସଂଗ୍ରହ । ଏହି ଧନ ବ୍ୟୟ କରି ସେ ଘଜନି ନଗରୀରେ ଅନେକ ସୁନ୍ଦର ଅଟ୍ଟାଳିକାମାନ ନିର୍ମାଣ କରାଇ ସେଠାରେ ମହମ୍ମଦୀୟ ଅନୁଷ୍ଠାନମାନ ସ୍ଥାପନ କରିଥିଲେ ।

ପାରସ୍ୟ ସାହିତ୍ୟରେ ତାଙ୍କର ପ୍ରଗାଢ଼ ଅନୁରାଗ । ତାଙ୍କ ନିକଟରେ ଜଣେ ପ୍ରଧାନ କବି ଥିଲେ । ତାଙ୍କର ନାମ ଫେରଦୁସୀ । ଫେରଦୁସୀ ମହମ୍ମଦଙ୍କଠାରୁ ଅନେକ ଉପହାର ପାଇଥିଲେ । ଅଲ୍‌ବେରୁନୀ ନାମକ ଆଉ ଜଣେ ଜ୍ଞାନୀ ମହମ୍ମଦଙ୍କର ଜଣେ ପ୍ରଧାନ ପଣ୍ଡିତ । ସେ ମହମ୍ମଦଙ୍କ ସଙ୍ଗେ ଭାରତକୁ ଆସି ହିନ୍ଦୁମାନଙ୍କର ଜ୍ଞାନରେ ମୋହିତ ହୋଇ ସେମାନଙ୍କର ଶାସ୍ତ୍ର ଅଧ୍ୟୟନ କଲେ । ସଂସ୍କୃତ ଭାଷା ଶିକ୍ଷା କରି ବେଦ ଓ ପୁରାଣମାନ ପାଠ କଲେ । ସେ ହିନ୍ଦୁମାନଙ୍କର ଇତିହାସ, ଚରିତ୍ର, ଆଚାର ବ୍ୟବହାର ବିଷୟରେ କେତେ ଠିକ୍ ବିବରଣ ଲେଖିଅଛନ୍ତି । ଅଲ୍‌ବେରୁନୀ ସମସ୍ତ ଅପେକ୍ଷା ହିନ୍ଦୁମାନଙ୍କର ଦର୍ଶନ ଶାସ୍ତ୍ରକୁ ବହୁ ପ୍ରଶଂସା କରୁଥିଲେ । ଭଗବଦ୍‌ଗୀତା ତାଙ୍କର ଗୋଟିଏ ଆଦରଣୀୟ ପୁସ୍ତକ ହୋଇଥିଲା । ତାଙ୍କୁ ଗଣିତ, ଜ୍ୟୋତିଷ ଜଣା ଥିଲା । ସେ ମୁସଲମାନ ହୋଇଥିଲେ ସୁଦ୍ଧା ଅନ୍ୟ ଧର୍ମକୁ ଘୃଣା କରୁ ନ ଥିଲେ । ଅଲ୍‌ବେରୁନୀ

ଓ ମହମ୍ମଦ ଘଜନୀଙ୍କ ଚରିତ୍ର ସଂପୂର୍ଣ୍ଣ ପୃଥକ୍, ମାତ୍ର ଦୁହେଁ ଏକ ସମୟର ଓ ଏକ ଦେଶର ଲୋକ ।

ମହମ୍ମଦ ୧୦୩୦ରେ ଘଜନୀ ଠାରେ ପ୍ରାଣତ୍ୟାଗ କଲେ ।

## ମହମ୍ମଦ ଘୋରି

ଅଫଗାନସ୍ଥାନରେ ଘୋର ବୋଲି ଗୋଟିଏ ଛୋଟ ପ୍ରଦେଶ ଥିଲା । ଘୋର ଓ ଘଜନୀରାଜାଙ୍କ ମଧ୍ୟରେ କେତେକାଳ ପର୍ଯ୍ୟନ୍ତ ଶତ୍ରୁତା ଥିଲା । ଘଜନୀ ମହମ୍ମଦଙ୍କ ମୃତ୍ୟୁ ଉତ୍ତାରୁ ତାଙ୍କର ବଂଶଧରମାନେ ଅତି ଦୁର୍ବଳ, ବିଳାସପ୍ରିୟ ଓ ଆଳସ୍ୟପରାୟଣ ହୋଇଗଲେ । ଘୋରର ଜଣେ ରାଜା ୧୧୫୦ ସାଲରେ ଘଜନୀ ନଗର ଲୁଣ୍ଠନ କଲେ । ସାତ-ଦିନ ସାତ ରାତି ସେ ଘଜନୀ ନଗରକୁ ଅଗ୍ନି ସଂଯୋଗ କରି ଛାରଖାର କଲେ । ଏହି ଘଟଣାର କେତେଦିନ ପରେ ଘଜନୀର ରାଜା ଦେଶ ପରିତ୍ୟାଗ କରି ପଞ୍ଜାବରେ ଯାଇ ନିବାସ କଲେ । ରାଜା ପଳାୟନ କଲା ପରେ ଘଜନୀ ଘୋର ରାଜାଙ୍କର ଅଧୀନ ହେଲା । ସେ ନିଜେ ଭ୍ରାତାଙ୍କୁ ଏହି ରାଜ୍ୟଟିରେ ରାଜା କଲେ—ତାଙ୍କ ନାମ ମହମ୍ମଦ । ଭାରତ ଇତିହାସରେ ଏହି ବ୍ୟକ୍ତି ଘୋର ମହମ୍ମଦ ନାମରେ ପରିଚିତ ।

କେତେକ ଅଂଶରେ ଘୋର ମହମ୍ମଦଙ୍କ ଚରିତ୍ର ଘଜନୀ ମହମ୍ମଦଙ୍କ ଚରିତ୍ର ପରି । ସେ ଜଣେ କର୍ତ୍ତବ୍ୟନିଷ୍ଠ ଇସଲାମଭକ୍ତ ଥିଲେ । ବିଧର୍ମୀ-ମାନଙ୍କୁ ହତ୍ୟା କଲେ ପୁଣ୍ୟ ହେବ ବୋଲି ତାଙ୍କର ମଧ୍ୟ ସମ୍ପୂର୍ଣ୍ଣ ବିଶ୍ୱାସ; ରାଜ୍ୟ ଲୁଣ୍ଠନ କରି ନିଜର ଧନାଗାର ପୂର୍ଣ୍ଣ କରିବାକୁ ତାଙ୍କର ମଧ୍ୟ ବଳବତୀ ପିପାସା । ପୁଣି ଘୋରିଙ୍କର ଆଉ ଗୋଟିଏ ଗୁଣ ଅଧିକ ଥିଲା—ସେ ନିଜର ରାଜ୍ୟ ବିସ୍ତାର କରିବାକୁ ଘଜନୀ ମହମ୍ମଦଙ୍କ ପରି ଅବହେଳା କରୁ ନ ଥିଲେ । ଭାରତରେ ହିନ୍ଦୁମାନଙ୍କୁ ପରାସ୍ତ କରି

ସେଠାରେ ଗୋଟିଏ ମୁସଲମାନ ରାଜ୍ୟ ସ୍ଥାପନ କରିବା ଇଚ୍ଛା ତାଙ୍କର ବଳବତ୍ତର ଥିଲା; ସେ ଏହି କଳ୍ପନାକୁ କାର୍ଯ୍ୟରେ ପରିଣତ କରିବାକୁ ଭାରତକୁ 'ନ' ଥର ଆସିଥିଲେ । ପ୍ରଥମ କେତେଥର ଯୁଦ୍ଧ କରି ସେ ପଞ୍ଜାବ ଓ ସିନ୍ଧୁ ପ୍ରଦେଶ ଅଧିକାର କଲେ । ଅନ୍ୟାନ୍ୟ ରାଜ୍ୟ ଜୟ କରିବାକୁ ପ୍ରସ୍ତୁତ ହେବାପାଇଁ, ଏହି ଦୁଇଟି ରାଜ୍ୟ ତାଙ୍କ ପକ୍ଷରେ ଅତି ସୁବିଧାଜନକ ହୋଇଥିଲା । ସେ ୧୧୮୬ ରେ ପଞ୍ଜାବ ଅଧିକାର କଲେ । ଚାରି ବର୍ଷର ଚେଷ୍ଟାରେ ସେ ଅନେକ ସୈନ୍ୟ ସଂଗ୍ରହ କରି ଗଙ୍ଗାତିର ଆଡ଼େ ଅଗ୍ରସର ହେଲେ ।

ଏହି ସମୟରେ ଭାରତରେ କେତେଜଣ ପ୍ରଧାନ ରାଜପୁତ ରାଜା ଥିଲେ । କନୌଜ ଦେଶରେ ଜୟଚନ୍ଦ୍ର ରାଜା ହୋଇଥିଲେ । ପୃଥ୍ୱୀରାଜଙ୍କ ଅଧୀନରେ ଦିଲ୍ଲୀ ଓ ଆଜମୀର ଥିଲା । ବୁନ୍ଦେଲଖଣ୍ଡରେ ଆଉ ଜଣେ ରାଜା ଥିଲେ । ବଙ୍ଗଳା ଦେଶରେ ଲକ୍ଷ୍ମଣସେନ ରାଜା ହୋଇଥିଲେ । ପୃଥ୍ୱୀରାଜ ଜୟଚନ୍ଦ୍ରଙ୍କ କନ୍ୟା ସଂଯୁକ୍ତାଙ୍କୁ ବିବାହ କରିଥିଲେ ।



ମାତ୍ର ଏହି ରାଜାଦ୍ୱୟଙ୍କ ପରସ୍ପର ବିରୋଧ ଭାବ ଥିଲା । ଯାହାହେଉ, ବିଦେଶୀ ଶତ୍ରୁ ଦ୍ୱାରମୁହିଁକୁ ଆସିବାର ଦେଖି, ଆର୍ଯ୍ୟାବର୍ତ୍ତର ପ୍ରଧାନ ରାଜାମାନେ ମିଳିତ ହୋଇ ପୃଥ୍ୱୀରାଜଙ୍କୁ ନାୟକ କରି ଯୁଦ୍ଧ କରିବାକୁ ଉଦ୍ୟତ ହେଲେ । ତାଲ୍ଲିବାରି ନାମରେ ଗୋଟିଏ ସ୍ଥାନ ଦିଲ୍ଲୀ ନିକଟରେ ଥିଲା । ଏଠାରେ ପୃଥ୍ୱୀରାଜ ମିଳିତସେନାକୁ ନେଇ ଶତ୍ରୁସୈନ୍ୟଙ୍କ ସଙ୍ଗେ ଯୁଦ୍ଧ କଲେ । ଯୁଦ୍ଧରେ ମହମ୍ମଦ ଘୋରି ପରାସ୍ତ ହୋଇ ପଞ୍ଜାବକୁ ଫେରି ଗଲେ, ହିନ୍ଦୁ ସୈନ୍ୟ ଶତ୍ରୁ ପଛେ ନ ଯାଇ ନିଜ ନିଜ ଦେଶକୁ ଫେରିଗଲେ ।

ମହମ୍ମଦ ଏକ ବର୍ଷ କାଳ ପୁନର୍ବାର ସୈନ୍ୟ ସଂଗ୍ରହ କରିବାକୁ ଲାଗିଲେ । ପରେ ୧୧୯୬ରେ ତାଲ୍‌ବାରରେ ପୃଥ୍ୱୀରାଜ ଓ ମହମ୍ମଦଙ୍କର ପୁନର୍ବାର ଯୁଦ୍ଧ ହେଲା । ଯୁଦ୍ଧରେ ହିନ୍ଦୁମାନେ ପରାସ୍ତ ହେଲେ, ପୃଥ୍ୱୀରାଜ ପଠାଣମାନଙ୍କ ହସ୍ତରେ ବନ୍ଦୀ ହୋଇ ମହମ୍ମଦଙ୍କ ଆଦେଶାନୁଯାୟୀ ନିହତ ହେଲେ । ଦେଶବତ୍ସଳ ବୀର ପୃଥ୍ୱୀରାଜଙ୍କ ମୃତ୍ୟୁ ପରେ ଭାରତରେ ମୁସଲମାନ ରାଜତ୍ୱ ଆରମ୍ଭ ହେଲା । ୧୧୯୬ ଠାରୁ ପ୍ରାୟ ସବୁ ଯୁଦ୍ଧରେ ମୁସଲମାନମାନଙ୍କର ଜୟ ଓ ହିନ୍ଦୁମାନଙ୍କର ପରାଜୟ ହୋଇଥିଲା । ଏହାର କେତେଗୋଟି ପ୍ରଧାନ କାରଣ ଇତିପୂର୍ବେ ଲେଖାଯାଇ ଅଛି । ହିନ୍ଦୁ ସୈନ୍ୟ ଋଗ୍‌ବେଦ ସମୟରେ ଯେଉଁ ଭାବରେ ଯୁଦ୍ଧ କରୁଥିଲେ, ଦ୍ୱାଦଶ ଶତାବ୍ଦୀର ଶେଷ ଭାଗରେ ମଧ୍ୟ ସେହି ଭାବ ଅବଲମ୍ବନ କଲେ । ବିଦେଶୀ ଶତ୍ରୁଙ୍କ ସହିତ ଯୁଦ୍ଧ କଲାବେଳେ ମଧ୍ୟ ତାହା ପରିବର୍ତ୍ତିତ କଲେ ନାହିଁ । ହସ୍ତିମାନେ ପ୍ରାଚୀନ କାଳରେ ଯୁଦ୍ଧରେ ବହୁତ ଉପକାର କରନ୍ତି ମାତ୍ର ଏବେ ସେଗୁଡ଼ିକ ରହିବାରୁ ବେଶି କ୍ଷତି ହେଉଥିଲା; ମାତ୍ର ରାଜପୁତମାନେ ହସ୍ତୀ ଯୁଦ୍ଧ ତ୍ୟାଗ କଲେ ନାହିଁ । ଯୁଦ୍ଧ ପ୍ରଣାଳୀରେ ମଧ୍ୟ ହିନ୍ଦୁମାନେ ବିଦେଶି ଶତ୍ରୁଙ୍କ ତୁଳନାରେ କିଞ୍ଚିତ୍ ନ୍ୟୂନ ଥିଲେ, କାରଣ ସେମାନେ ଅନେକ କାଳ ଉର୍ବର ଦେଶରେ ନିବାସ କରି, ଅନାୟାସରେ ଖାଦ୍ୟ ପାଇ ସ୍ୱଭାବତ ପରେ ଆଳସ୍ୟପରାୟଣ ହେବାରୁ ଶୀତ ଓ ପାହାଡ଼ମୟ ଦେଶାଗତ କଷ୍ଟସହିଷ୍ଣୁ ପଠାଣମାନଙ୍କ ସଙ୍ଗେ ପାରି ପାରିଲେ ନାହିଁ । ପୁଣି ହିନ୍ଦୁମାନଙ୍କ ଆହାର ଅପେକ୍ଷା ପଠାଣ-ମାନଙ୍କ ଆହାର ଅଧିକ ପୁଷ୍ଟିକର । ପଠାଣମାନଙ୍କର ଜାତିଭେଦ ନାହିଁ । ଯୁଦ୍ଧସମୟରେ ଜାତିଭେଦ ଧରିବସିଲେ ଯେ କେତେ କ୍ଷତି ହେବ ତାହା ସହଜରେ ଅନୁମାନ କରାଯାଇ ପାରେ । ପଠାଣମାନଙ୍କର ସେପରି କିଛି ଜାତିଭେଦ ନ ଥିଲା ।

ଜୟଚନ୍ଦ୍ର ଭାବଥିଲେ ଯେ, ମହମ୍ମଦ ଦ୍ୱାରା ପୃଥ୍ୱୀରାଜ ପରାଜିତ ହେଲା ଉତ୍ତାରୁ ସେ ମହମ୍ମଦଙ୍କୁ ଦେଶରୁ ତଡ଼ି ଦେବେ, ମାତ୍ର ତାଙ୍କବାର ଯୁଦ୍ଧ ପରେ ମହମ୍ମଦ ଘୋରଙ୍କର କ୍ଷମତା ଅଧିକ ହୋଇଥିଲା, ସେ ଅନାୟ ଏକ ଯୁଦ୍ଧରେ ଜୟଚନ୍ଦ୍ରଙ୍କୁ ବଧ କଲେ । ପୃଥ୍ୱୀରାଜ ଓ ଜୟଚନ୍ଦ୍ରଙ୍କୁ ନିହତ କରି ମହମ୍ମଦ ଦିଲ୍ଲୀ, ଅଜମୀର ଓ କନାଉଜର ରାଜା ହେଲେ । ସେ ଅନ୍ୟ ରାଜ୍ୟଗୁଡ଼ିକ ଜୟ କରିବା ଭାର ତାଙ୍କର ଜଣେ ପ୍ରିୟ ପାତ୍ର କୁତୁବୁଦ୍ଦୀନଙ୍କୁ ଦେଇ ସ୍ୱଦେଶକୁ ଫେରିଲେ ।

କୁତୁବୁଦ୍ଦୀନ ମହମ୍ମଦଙ୍କର ଜଣେ କ୍ରୀତଦାସ, ମାତ୍ର ତାଙ୍କର ତୀକ୍ଷ୍ଣବୁଦ୍ଧିଦ୍ୱାରା ମହମ୍ମଦଙ୍କୁ ମୋହିତ କରି ସେ ସୁଲତାନଙ୍କର ପ୍ରିୟ ପାତ୍ର ହୋଇଥିଲେ । ପ୍ରଭୁଙ୍କ ଆଜ୍ଞାନୁଯାୟୀ ସେ ୧୧୯୩ ଦିଲ୍ଲୀରେ ପ୍ରବେଶ କରି ବାରାଣସୀ ଆଡ଼େ ଅଗ୍ରସର ହେଲେ । ବାରାଣସୀ ତାଙ୍କର ଅଧୀନ ହେଲା । ୧୧୯୭ ରେ ଗ୍ୱାଲିଅର, ଗୁଜରାଟ ରାଜଧାନୀ ଅନହିଲବାଡ଼ ମଧ୍ୟ କୁତୁବୁଦ୍ଦୀନଙ୍କ ଅଧୀନତା ସ୍ୱୀକାର କଲା । କୁତୁବୁଦ୍ଦୀନଙ୍କର ମହମ୍ମଦ ଖିଲ୍‌ଜି ବୋଲି ଜଣେ ଚତୁର ସେନାପତି ଥିଲେ । ସେ ୧୧୯୭ ରେ ବିହାରଦେଶ ଜୟ କରିବାକୁ ଗଲେ । ସେଠାରେ ଅନେକ ବୌଦ୍ଧ ଓ ହିନ୍ଦୁ ଦେବାଳୟ ଥିଲା, ସେ ସବୁ ଭାଙ୍ଗି ବିଧ୍ୱସ୍ତ କଲେ । ପରେ ସେ ବଙ୍ଗଳା ଦେଶକୁ ଗଲେ, ନବଦ୍ୱୀପରେ ବଙ୍ଗଳା ରାଜା ଲକ୍ଷ୍ମଣସେନ ନିବାସ କରୁଥିଲେ, ଖିଲ୍‌ଜି ୧୮ ଜଣ ଅଶ୍ୱାରୋହିଙ୍କ ସହିତ ଛଦ୍ମବେଶରେ ଯାଇ ଅତି ଚମତ୍କାର ଭାବରେ ରାଜାଙ୍କ ଦୁର୍ଗ ଅଧିକାର କଲେ । କଥିତ ଅଛି ଯେ ସେତେବେଳେ ଲକ୍ଷ୍ମଣସେନ ଭୋଜନ କରୁଥିଲେ । ଶତ୍ରୁ ଆଗମନ ଶୁଣିବାକ୍ଷଣି ସେ ଭୟବିହ୍ୱଳ ହୋଇ ପଛଦ୍ୱାର ବାଟେ ପଳାୟନ କଲେ । ଢାକାକୁ ଯାଇ ସେ ଗୋଟିଏ ଛୋଟରାଜ୍ୟ ସ୍ଥାପନ କଲେ । ଖିଲ୍‌ଜି ବଙ୍ଗଳାଦେଶ ଅଧୀନ କରି ନବଦ୍ୱୀପ ପରିବର୍ତ୍ତିରେ ଲକ୍ଷ୍ମଣାବତୀ ନଗରକୁ ବଙ୍ଗଳାର ରାଜଧାନୀ କଲେ । ଏହି

ସମୟଠାରୁ ବଙ୍ଗଳା ବିଦେଶିଙ୍କ ଅଧୀନରେ ରହିଲା । ଖିଲ୍‌ଜି ରାଜ୍ୟଜୟ ଶେଷ କରି ଲୁଣ୍ଠିତ ଦ୍ରବ୍ୟସବୁ କୁତୁବୁଦ୍ଦୀନଙ୍କ ନିକଟରେ ପଠାଇଲେ ।

୧୨୦୩ ସାଲରେ ମୁସଲମାନଗଣ ବୁନ୍ଦେଲଖଣ୍ଡ ଅବରୋଧ କଲେ । ବୁନ୍ଦେଲଖଣ୍ଡ ମଧ୍ୟ ସେମାନଙ୍କର ଅଧୀନ ହେଲା । ଏହି ବର୍ଷ ମହମ୍ମଦ ଘୋରୀଙ୍କ ଜ୍ୟେଷ୍ଠଭ୍ରାତାଙ୍କର ମୃତ୍ୟୁ ଘଟିଲା, ତେଣୁ ମହମ୍ମଦ ଘଜନୀକୁ ଫେରିଲେ । ୧୨୦୫ରେ ପଞ୍ଜାବର ଗୋଟିଏ ବିଦ୍ରୋହ ଦମନ କରିବାକୁ ସେ ପୁନରପି ଆସିଲେ । ବିଦ୍ରୋହୀଗଣଙ୍କୁ କ୍ରୂର ଶାସନ ଦ୍ୱାରା ଦମନ କରି, ମହମ୍ମଦ ୧୨୦୬ରେ ସେଠାରୁ ଘଜନୀକୁ ଫେରିଲାବେଳେ ପଥରେ କୌଣସି ବ୍ୟକ୍ତିଦ୍ୱାରା ନିହତ ହେଲେ ।

ମହମ୍ମଦ ଘୋରୀଙ୍କ ଦ୍ୱାରା ପରାସ୍ତ ହେଲାପରେ ରାଜପୁତମାନଙ୍କର ଗତି କଣ ହେଲା ? ସେମାନେ ରାଜସ୍ଥାନକୁ ଯାଇ ନିବାସ କରିବାକୁ ଲାଗିଲେ । ରାଜସ୍ଥାନ ଗୋଟିଏ ମରୁଭୂମି; ସୋମନାଥ ଦେବାଳୟକୁ ଗଲାବେଳେ ଘଜନୀ ମହମ୍ମଦ ଏହିବାଟେ ଯାଇ ବହୁତ କଷ୍ଟ ପାଇଥିଲେ । ଏପରି ମରୁ ପ୍ରାନ୍ତରରେ ରାଜପୁତମାନେ ପୁନର୍ବାର ଛୋଟ ଛୋଟ ରାଜ୍ୟ ସ୍ଥାପନ କଲେ । ଶତ୍ରୁସୈନ୍ୟ ଏହି ମରୁଭୂମିରେ ଯିବା ଅତି କଷ୍ଟ । ଏଠାରେ ଖାଇବା ଓ ପିଇବା ଯୋଗାଇବା ବହୁ କଷ୍ଟସାଧ୍ୟ । ପୁଣି ଶତ୍ରୁମାନେ ଜୟ କଲେ ମଧ୍ୟ ମରୁଭୂମି ଜିଣି ସେମାନଙ୍କର କି ଲାଭ ହେବ ? ଏଠାରେ ରହି ରାଜପୁତମାନେ ଏପରି ଭାବରେ କେତେକାଳ ଯାଏଁ ଶତ୍ରୁ ଆକ୍ରମଣରୁ ରକ୍ଷା ପାଇଲେ ।



## ଦାସବଂଶର ରାଜାମାନେ

୧୨୦୬-୧୨୯୦

ଘୋର ମହମ୍ମଦ ଯେଉଁ ଦେଶ ଜୟ କରିଥିଲେ, ତାହା ତାଙ୍କ ମୃତ୍ୟୁପରେ କୁତବୁଦ୍ଦୀନଙ୍କର ଅଧୀନ ହେଲା । ପ୍ରଭୁଙ୍କର ମୃତ୍ୟୁ ସମ୍ବାଦ ଶୁଣିଲା ପରେ କୁତବୁଦ୍ଦୀନ ଦିଲ୍ଲୀରେ ସୁଲତାନ ହୋଇ ରାଜ୍ୟ ପରିପାଳନ କରିବାକୁ ଲାଗିଲେ । କୁତବୁଦ୍ଦୀନଙ୍କର ଜନ୍ମଭୂମି ତୁର୍କିସ୍ଥାନ । ସେ ବାଲ୍ୟବୟସରୁ ଜଣେ ଦାସ ବଣିକଦ୍ୱାରା କ୍ରୀତ ହୋଇଥିଲେ । ସେହି କାଳରେ ମନୁଷ୍ୟମାନଙ୍କୁ ଘୋଡ଼ା ଛେଳି କିଣା ବିକା କଲାପରି କରୁଥାନ୍ତି । ଏହି ବାଣିଜ୍ୟ କରି କେତେ ବଣିକ ପ୍ରଭୂତ ଧନ ଉପାର୍ଜ୍ଜନ କରିଥିଲେ । ଦାସମାନଙ୍କୁ କିଣିଲା ଉତ୍ତାରୁ ସେମାନଙ୍କୁ ଉପଯୁକ୍ତ ବିଦ୍ୟାଶିକ୍ଷା ଦିଆଯାଏ । ଦାସର ବୁଦ୍ଧି-ଶୁଶ୍ରୂଷା ଓ କର୍ମକୁଶଳତା ଉପରେ ତାହାର ମୂଲ୍ୟ ନିର୍ଭର କରୁଥିଲା । ଏଣୁ ବଣିକମାନେ ଦାସମାନଙ୍କର ଜ୍ଞାନୋନ୍ନତି ନିମନ୍ତେ ବିଶେଷ ଯତ୍ନ ନେଉଥିଲେ । କୁତବୁଦ୍ଦୀନ ବାଲ୍ୟ-ବୟସରୁ ନିଜର ବୁଦ୍ଧି-କୁଶଳତା ଦେଖାଇ ଥିଲେ । ଜଣେ ବଣିକ ଠାରୁ ଘୋର ମହମ୍ମଦ କୁତବୁଦ୍ଦୀନଙ୍କୁ କିଣି ନିକଟରେ ଚାକର କରି ରଖିଲେ । ତାଙ୍କର ସଦ୍‌ବୁଦ୍ଧି, ପ୍ରଭୁଭକ୍ତି ଓ କର୍ତ୍ତବ୍ୟନିଷ୍ଠାରେ ପ୍ରୀତ ହୋଇ ମହମ୍ମଦ ତାଙ୍କୁ ରାଜ୍ୟର ଜଣେ ଉଚ୍ଚ କର୍ମଚାରୀ କଲେ । ସେ ଘୋର ମହମ୍ମଦଙ୍କର ଦକ୍ଷିଣହସ୍ତ ସ୍ୱରୂପ ଥିଲେ ବୋଲି କହିଲେ ଚଳେ । ସେ ହେତୁରୁହିଁ ଭାରତ ବିଜୟ ଭାର ତାଙ୍କ ହାତରେ ଦେଇ ଘୋରି ନିଶ୍ଚିନ୍ତ ମନରେ ସ୍ୱଦେଶକୁ ଫେରିଥିଲେ । କୁତବୁଦ୍ଦୀନ ଯୁଦ୍ଧ କରି ଭାରତରେ ଆଫଗାନ ରାଜ୍ୟ ସ୍ଥାପନ କଲେ ପୁଣି ପ୍ରଭୁଙ୍କ ମୃତ୍ୟୁପରେ ଦିଲ୍ଲୀର ସୁଲତାନ ହେଲେ । ପ୍ରଥମ ରାଜା ପୂର୍ବେ ଜଣେ ଦାସ ହୋଇଥିବାରୁ ଏହି ରାଜବଂଶ ଦାସ ବଂଶ ନାମରେ ପରିଚିତ ।

କୁତବୁଦ୍ଦୀନଙ୍କ ପରି ଆଉ କେତେଜଣ ଦାସ ମଧ୍ୟ ଉଚ୍ଚ କର୍ମଚାରୀ ହୋଇଥିଲେ । ସେମାନଙ୍କୁ ପ୍ରୀତ କରିବାକୁ ସେ ରାଜ୍ୟର ବିଭିନ୍ନ ପ୍ରଦେଶରେ ପ୍ରତିନିଧିରୂପେ ନିଯୁକ୍ତ କଲେ । ସେ ଜଣେ ଦାସର କନ୍ୟାକୁ ବିବାହ କଲେ । ପୁଣି ତାଙ୍କ ଭଗିନୀଙ୍କୁ ଆଉ ଜଣେ ଦାସ ସହିତ ବିବାହ ଦେଲେ । ଅଲ୍ଟମଷ ନାମକ ଆଉ ଜଣେ ଦାସ ତାଙ୍କ କନ୍ୟାର ପାଣିଗ୍ରହଣ କଲେ । କୁତବୁଦ୍ଦୀନ ରାଜ୍ୟଜୟ କରି ତାହାର ପରିପାଳନ ବିଷୟ ଭଲ-ରୂପେ ବୁଝିବାକୁ ଲାଗିଲେ । ସେ ହିନ୍ଦୁମାନଙ୍କୁ ଘୃଣାଚକ୍ଷୁରେ ଦେଖୁଥିଲେ । ସେତେବେଳେ ହିନ୍ଦୁମାନଙ୍କର ଅବସ୍ଥା ଅତି ଶୋଚନୀୟ ଥିଲା; ମାତ୍ର ଯେଉଁ ହିନ୍ଦୁମାନେ ପ୍ରାଣ ଭୟରେ ଇସଲାମ୍ ଧର୍ମ ଗ୍ରହଣ କରି ଥିଲେ, ସେମାନଙ୍କୁ କେବଳ ମୁସଲମାନମାନଙ୍କ ପରି ବ୍ୟବହାର କରା-ଯାଉ ଥିଲା । କୁତବୁଦ୍ଦୀନ ଦିଲ୍ଲୀ ନଗରୀରେ ଗୋଟିଏ ଅତ୍ୟୁଚ୍ଚ ସ୍ମୃତି-ସ୍ତମ୍ଭର ନିର୍ମାଣ କାର୍ଯ୍ୟ ଆରମ୍ଭ କରିଥିଲେ, ମାତ୍ର ସେ ମଲା ପୂର୍ବରୁ ତାହା ଶେଷ ହୋଇ ନ ଥିଲା । ଜାମାତା ଅଲ୍ଟମଷ ଯେତେବେଳେ ଦିଲ୍ଲୀର ସୁଲତାନ ହେଲେ, ସେହି ସମୟରେ ସ୍ତମ୍ଭଟିର କାର୍ଯ୍ୟ ସମ୍ପୂର୍ଣ୍ଣ ହୋଇଥିଲା । ଏହି ସ୍ତମ୍ଭକୁ 'କୁତବ୍-ମିନାର' ବୋଲି କହନ୍ତି । ପୃଥିବୀରେ ଏହାହିଁ ସବୋଚ୍ଚ ସ୍ତମ୍ଭ । କୁତବଙ୍କ ସମୟରେ ଗୋଟିଏ ମସଜିଦ ମଧ୍ୟ ନିର୍ମିତ ହୋଇ ଥିଲା । ଯୁଦ୍ଧ ସମୟରେ ଯେଉଁ ହିନ୍ଦୁ ଦେବାଳୟ ମାନ ଭଙ୍ଗା ଯାଇ ଥିଲା ସେଥିର ଇଟାପଥର ଓ ଅନ୍ୟାନ୍ୟ ପଦାର୍ଥମାନ ଏହାର ନିର୍ମାଣ କାର୍ଯ୍ୟରେ ବ୍ୟବହୃତ ହୋଇଥିଲା । ଯେଉଁ ହିନ୍ଦୁ ଶିଳ୍ପିମାନେ ପ୍ରାଣ ଭୟ କରି, ଜୀବନ ଚଳାଇ ନ ପାରି ଇସଲାମ ଧର୍ମରେ ମିଶି ଥିଲେ, ସେମାନେହିଁ ଏହି ସ୍ତମ୍ଭ, ମସଜିଦ ପ୍ରଭୃତି କାର୍ଯ୍ୟମାନ କରିଥିଲେ । କୁତବୁଦ୍ଦୀନ ହିନ୍ଦୁମାନଙ୍କୁ ଅତି କ୍ରୂର ଓ କଠୋର ଭାବରେ ବ୍ୟବହାର କରୁଥିଲେ ସତ୍ୟ, ମାତ୍ର ସେ ମୁସଲମାନମାନଙ୍କର ଭଲ କରୁଥିଲେ ।

କଥିତ ଅଛି ଯେ, ସେ ଶତ ଶତ ମୁସଲମାନଙ୍କୁ ଧନ ଦେଉଥିଲେ ଓ ତାଙ୍କର ସେନ୍ୟମାନଙ୍କୁ ମୂଲ୍ୟବାନ୍ ଉପହାର ଦେଇ ତୁଷ୍ଟ କରୁଥିଲେ ।

କୁତବୁଦ୍ଦୀନ ୧୨୧୧ରେ ପ୍ରାଣତ୍ୟାଗ କଲାପରେ ତାଙ୍କ ପୁତ୍ର ଆରାମ ସୁଲତାନ ପଦରେ ଅଧିଷ୍ଠିତ ହେଲେ । ମାତ୍ର ଆରାମଙ୍କର ମନ୍ଦ ଚରିତ୍ର ଓ ଅଯୋଗ୍ୟତା ଦେଖି ତାଙ୍କୁ ତଡ଼ି ଦେଇ କୁତୁବଙ୍କ ଜାମାତା ଅଲ୍ତମସ୍ ସୁଲତାନ ହେଲେ । କୁତବୁଦ୍ଦୀନ ଘୋର ମହମ୍ମଦଙ୍କର ପୁତ୍ର ନ ହୋଇ ମଧ୍ୟ ତାଙ୍କ ମୃତ୍ୟୁ ପରେ ରାଜ୍ୟ ଅଧିକାର କରିଥିଲେ । ଏବେ ଆରାମଙ୍କ ଅଯୋଗ୍ୟତା ଦେଖି ପଠାଣମାନେ ଅଲ୍ତମସଙ୍କୁ ରାଜା କଲେ । ରାଜାଙ୍କ ମୃତ୍ୟୁ ପରେ ବୟସ୍ଥ ଚତୁର ପୁତ୍ର ନ ଥିଲେ, ଅନ୍ୟ କେହି ନିକଟ ବନ୍ଧୁ ରାଜା ହେଉଥିଲେ । ଏହି ନିୟମାନୁଯାୟୀ ଅଲ୍ତମସ୍ ସୁଲତାନ ହୋଇ-ଥିଲେ । ତାଙ୍କ ସମୟରେ 'କୁତବ୍ ମିନାର' ପୂର୍ଣ୍ଣ ଆକାର ଧାରଣ କରି-ଥିଲା । ପୁଣି ଅଲ୍ତମସ୍ ନିଜର ସମାଧି ନିମନ୍ତେ କୁତବ୍ ମସଜୀଦ ନିକଟରେ ଗୋଟିଏ ସୁନ୍ଦର ଗୃହ ନିର୍ମାଣ କରାଇ ଥିଲେ । ପଠାଣ ରାଜା-ମାନେ ମୃତ୍ୟୁ ପୂର୍ବରୁ ସମାଧି ତିଆରି କରାଇଥାନ୍ତି ।

ଅଲ୍ତମସଙ୍କ ସମୟରେ ମଧ୍ୟ-ଆସିଆରୁ ମଙ୍ଗୋଲମାନେ ଆସି ପଞ୍ଜାବ ଆକ୍ରମଣ କଲେ । ସେମାନଙ୍କର ଦଳପତି ଦୁଷ୍ଟ ଚେଙ୍ଗିଜ୍ଖାଁ ଦକ୍ଷୀ ଦେଇ ତିବତ୍ ଯିବାକୁ ଭାବୁ ଥିଲେ । ମାତ୍ର ସୌଭାଗ୍ୟକ୍ରମେ ସେ ଉକ୍ତ କାର୍ଯ୍ୟରୁ ମନ ଫେରାଇ ଥିଲେ । ଅଲ୍ତମସଙ୍କର କେତେ ପୁତ୍ର ଥିଲେ । ମାତ୍ର ପୁଅମାନଙ୍କ ଅପେକ୍ଷା ତାଙ୍କ କନ୍ୟା ରାଜିୟାର ଗୁଣରେ ସେ ଏକାବେଳକେ ମୁଗ୍ଧ । ତେଣୁ ମୃତ୍ୟୁ ପୂର୍ବରୁ ରାଜିୟା ସୁଲତାନ ହେଉ ବୋଲି ସେ କହିଥିଲେ । ମାତ୍ର ରାଜିୟା ସୁଲତାନ ହେବାରୁ କେତେ ଲୋକ ବିଦ୍ରୋହ ଆରମ୍ଭ କଲେ । ରାଜିୟା ସୁଲତାନ ହୋଇ ସୁଦକ୍ଷ ଭାବରେ ରାଜକାର୍ଯ୍ୟ ପରିଚାଳନ କଲେ । ସେ ବୁଦ୍ଧିମତୀ

ଓ ନ୍ୟାୟବର୍ତ୍ତୀ । ଜ୍ଞାନାଭବୃଦ୍ଧିରେ ତାଙ୍କର ଅତ୍ୟନ୍ତ ଶ୍ରଦ୍ଧା ଥିଲା । ସେ ପ୍ରଜାମାନଙ୍କୁ ଦୟାରେ ପାଳନ କରୁଥିଲେ । ଯୁଦ୍ଧକ୍ଷେତ୍ରରେ ମଧ୍ୟ ସେ ସାହସରେ ଊଣା ନ ଥିଲେ । ଅଶ୍ୱାରୋହଣକରି ସେ ନିଜେ ଯୁଦ୍ଧକ୍ଷେତ୍ରକୁ ଯାଉଥିଲେ । ମାତ୍ର ତାଙ୍କର ଗୋଟିଏ ଗୁରୁତର ଦୋଷ ରହିଯାଇ ଥିଲା । ସେ ପୁରୁଷ ନ ହୋଇ ସ୍ତ୍ରୀ ଥିଲେ । ଏଣୁ ବିଦ୍ରୋହିଗଣ ତାଙ୍କୁ ନୃଶଂସ ଭାବରେ ହତ୍ୟା କଲେ ।

୧୨୪୬ ରେ ଅଲ୍‌ତମଶଙ୍କ କନିଷ୍ଠ ପୁତ୍ର ଦିଲ୍ଲୀର ସୁଲତାନ ହେଲେ । ତାଙ୍କ ନିକଟରେ ଉଲୁଘଖାନ୍ ବଲବନ୍ ନାମରେ ଜଣେ ଚତୁର ବ୍ୟକ୍ତି କାର୍ଯ୍ୟ କରୁଥିଲେ । ସେ କାର୍ଯ୍ୟନିପୁଣ ଥିବାରୁ ସାମାନ୍ୟ କ୍ରୀତଦାସ ଅବସ୍ଥାରୁ ଉଠି ସୁଲତାନଙ୍କ ସେନାପତି ହୋଇଥିଲେ । ସୁଲତାନ୍ ବଲବନଙ୍କ ସହ ନିଜ କନ୍ୟାର ବିବାହ ଦେଇ ପରେ ତାଙ୍କ ଉପରେ ସମସ୍ତ ରାଜ୍ୟଭାର ନ୍ୟସ୍ତ କରି ତାଙ୍କୁ ରାଜ୍ୟର ଉତ୍ତରାଧିକାରୀ କଲେ ।

ବଲ୍‌ବନ ୧୨୬୬ ଠାରୁ ୧୨୮୬ ପର୍ଯ୍ୟନ୍ତ ରାଜତ୍ୱ କରିଥିଲେ । ସେ ସୁଲତାନ ହେବା ଆଗରୁହିଁ ରାଜ୍ୟର ସକଳ ବିଷୟ ବୁଝୁଥିଲେ; ଏଣୁ ରାଜ୍ୟଶାସନ ତାଙ୍କ ପକ୍ଷରେ କଷ୍ଟକର ବୋଧ ହେଲା ନାହିଁ । ସୁଲତାନ ହେବା ପରେ ସେ ତାଙ୍କ ଶତ୍ରୁମାନଙ୍କୁ ହତ୍ୟା କଲେ । ପ୍ରାଣନାଶ ଓ ରକ୍ତପାତ କରିବାକୁ ସେ କେବେ କୁଣ୍ଠିତ ହେଉ ନ ଥାନ୍ତି । ତାଙ୍କୁ ଦେଖିବା ମାତ୍ରେ ସମସ୍ତେ ଭୟରେ କମ୍ପୁଥିଲେ । ସେ ଜୀବନରେ କେବେ ହସି ନ ଥିଲେ । ନ୍ୟାୟ ବିଚାର ବେଳେ ସେ ଭାଇ ବନ୍ଧୁ ବଡ଼ ଛୋଟ ସମସ୍ତଙ୍କୁ ସମାନ ଦେଖୁଥିଲେ । ତାଙ୍କର ଅନେକ ଗୁପ୍ତଚର ଥିଲେ । ଏମାନଙ୍କ ସମ୍ବାଦ ଉପରେ ନିର୍ଭର କରି ସେ ଦୋଷିଙ୍କୁ ଦଣ୍ଡ ଦେଉଥିଲେ । ସେ ଜଣେ ଖାଣ୍ଟି ମୁସଲମାନ, ନିଷ୍ଠାପର ଇସ୍‌ଲାମଭକ୍ତ ।

ହିନ୍ଦୁମାନଙ୍କୁ ସେ ଶୃଙ୍ଖଳ ଦେଇ ନ ଥିଲେ, ସେମାନଙ୍କୁ ହତ୍ୟା କରାଉଥିଲେ । ପରେ ହିନ୍ଦୁମାନେ ଦିଲ୍ଲୀ ନିକଟରେ ବିଦ୍ରୋହ କରି ଉଠିବାରୁ, ବଲ୍‌ବନ୍ ସେଠାକୁ ସୈନ୍ୟ ପଠାଇ ୧୨୦୦୦ ହିନ୍ଦୁଙ୍କୁ ବାନ୍ଧି ଆଣିଲେ ଏବଂ ଶେଷରେ ସେମାନଙ୍କୁ ନିଷ୍ଠୁର ଭାବରେ ହତ୍ୟା କଲେ ।

ସେହି ସମୟରେ ବଙ୍ଗଳାର ରାଜପ୍ରତିନିଧି ଦିଲ୍ଲୀ-ସୁଲତାନଙ୍କୁ ନ ମାନି, ବଙ୍ଗ ପ୍ରଦେଶରେ ସ୍ୱାଧୀନ ରାଜପଣ ଚଳାଇବାକୁ ଚେଷ୍ଟା କଲେ । ବଲ୍‌ବନ୍ ସେନା ପଠାଇ ବଙ୍ଗ-ନବାବଙ୍କ ବଂଶନାଶ କରି ଦେଲେ ଏବଂ ସେଠାରେ ପ୍ରଜାମାନଙ୍କୁ ଭୟ ଦେଖାଇବା ଉଦ୍ଦେଶ୍ୟରେ ସେ ରାଜମାର୍ଗର ଦୁଇ ପାର୍ଶ୍ୱରେ ବଡ଼ ବଡ଼ ବାଉଁ ପୋତି ସେଥିରେ ନିହତ ଲୋକଙ୍କ ଶବ ଝୁଲାଇ ରଖିଲେ । ପରେ ସେ ତାଙ୍କର ଜଣେ ପୁତ୍ରକୁ ବଙ୍ଗଳାରେ ରାଜ-ପ୍ରତିନିଧିରୂପେ ନିଯୁକ୍ତ କଲେ ।

ବଲ୍‌ବନ୍‌ଙ୍କ ବୃଦ୍ଧ ବୟସରେ, ତାଙ୍କର ପ୍ରିୟ ଜ୍ୟେଷ୍ଠ ପୁତ୍ର ପଞ୍ଜାବର କୌଣସି ଏକ ଯୁଦ୍ଧରେ ନିହତ ହେଲେ । ଏହି ନିଦାରୁଣ ଘଟଣାହିଁ ତାଙ୍କ ମୃତ୍ୟୁର ପ୍ରଧାନ କାରଣ । ବଲ୍‌ବନଙ୍କ ମରଣ ପରେ କାଇକୋବାଦ୍ ନାମକ ଜଣେ ବିଳାସପ୍ରିୟ ପଠାଣ ଦିଲ୍ଲୀର ସୁଲତାନ୍ ହେଲେ । ସେ ୧୨୯୦ ସାଲରେ ନିହତ ହେବାରୁ ଦିଲ୍ଲୀରେ ଦାସ ସୁଲତାନବଂଶର ଅବସାନ ହେଲା ।

—:o:—

## ମୁସଲମାନଗଣଙ୍କ ଦାକ୍ଷିଣାତ୍ୟ ବିଜୟ

କାଇକୋବାଦ୍ ମୃତ୍ୟୁ ପରେ, ଦିଲ୍ଲୀର କେତେ ଜଣ ଉଚ୍ଚ ରାଜକର୍ମଚାରୀ ଖିଲ୍‌ଜିବଂଶର ଫିରୋଜ୍‌ସା ନାମକ ଜଣେ ବ୍ୟକ୍ତିଙ୍କୁ ଦିଲ୍ଲୀର ସୁଲତାନ୍ ପଦରେ ଅଧିଷ୍ଠିତ କଲେ । ଖିଲ୍‌ଜିବଂଶର ପଠାଣମାନେ ମଧ-

ଅସିଥିରୁ ଅସି ସେତେବେଳେ ଦିଲ୍ଲୀରେ ବାସ କରୁଥାନ୍ତି । ଫିରୋଜ୍‌ସା 'ଜଲାଲୁଦ୍ଦୀନ' ନାମରେ ପରିଚିତ । ସୁଲତାନ୍ ହେବା ବେଳକୁ ତାଙ୍କର ବୟସ ୭୦ ବର୍ଷ । ସେ ଅତି ଉତ୍ତମ ଲୋକ । ସେ ବିଶୁଦ୍ଧ ନିଷ୍ଠାବାନ୍ ମୁସଲମାନ ହେଲେହେଁ ବିଧର୍ମୀମାନଙ୍କର ଉତ୍ପୀଡ଼ନ କରିବାକୁ ଇଚ୍ଛୁକ ନ ଥିଲେ । ଦୋଷିଙ୍କୁ ଦଣ୍ଡ ନ ଦେଇ ସେ ତାଙ୍କୁ କହୁଥାନ୍ତି, 'ତୁମେ ଏପରି ଦୋଷ ଆଉ କେବେ କରିବ ନାହିଁ ।' ଏତିକରେ ତାଙ୍କ କ୍ରୋଧ ଶେଷ । ସେ କାହାରି କେବେ ଅନିଷ୍ଟ କରି ନ ଥିଲେ ।

ଜଲାଲୁଦ୍ଦୀନଙ୍କର ଏହି ସରଳ ଶାନ୍ତ ସ୍ୱଭାବ ଫଳରେ ରାଜ୍ୟରେ ଦସ୍ୟୁ, ଦୁଷ୍ଟଙ୍କ ସଂଖ୍ୟା ବଢ଼ିଲା—ଦୁଷ୍କର୍ମ ବା ଚୋରି କରିବାକୁ କେହି ଆଉ ଭୟ କଲେ ନାହିଁ । ସାମନ୍ତ ରାଜାମାନେ କର ପଠାଇବାରେ ଅବହେଳା କଲେ । ଏଣୁ କହାଯାଇ ପାରେ ଯେ, ତାଙ୍କର ଦୟା, ଅହିଂସା ଓ ଶାନ୍ତ ଭାବ ଯୋଗୁଁ ଜଲାଲୁଦ୍ଦୀନ ସ୍ୱକୀୟ କର୍ତ୍ତବ୍ୟରେ ତ୍ରୁଟି କରିଥିଲେ ।

ଅଲାଉଦ୍ଦୀନ ଜଲାଲୁଦ୍ଦୀନଙ୍କର ଭ୍ରାତୁଷ୍ପୁତ୍ର । ପଠାଣ ପ୍ରଥା ଅନୁସାରେ, ସେ ପିତୃବ୍ୟଙ୍କ କନ୍ୟାକୁ ବିବାହ କରିଥିଲେ । ଜଲାଲୁଦ୍ଦୀନ ଅଲାଉଦ୍ଦୀନଙ୍କୁ ବଡ଼ ପ୍ରେମ କରୁଥାନ୍ତି । ଥରେ ଅଲାଉଦ୍ଦୀନ ମାଳବ ପ୍ରଦେଶ ଜୟ କରିବାକୁ ଯିବା ନିମନ୍ତେ ସୁଲତାନ୍‌ଙ୍କର ଅନୁମତି ପ୍ରାର୍ଥନା କଲେ; ବୃଦ୍ଧ ସୁଲତାନ୍ ତାଙ୍କୁ ଅନୁଜ୍ଞା ଦେଲେ । ଅଲାଉଦ୍ଦୀନ ମାଳବ ଜିଣିଲେ, କିନ୍ତୁ ସେଠାରୁ ନ ଫେରି ଅଧିକ ଦକ୍ଷିଣକୁ ଯାଇ ଦାକ୍ଷିଣାତ୍ୟର ହିନ୍ଦୁରାଜାମାନଙ୍କ ସହିତ ଯୁଦ୍ଧ କଲେ ।

ସେତେବେଳେ ଦାକ୍ଷିଣାତ୍ୟରେ ଚାରିଗୋଟି ପ୍ରଧାନ ରାଜ୍ୟ ଥିଲା । ପ୍ରଥମଟି ଯାଦବରାଜ୍ୟ—ରାଜଧାନୀ ଦେବଗିରି । ସେଠାରେ ସେତେବେଳେ ରାମଚନ୍ଦ୍ର ନାମକ ଜଣେ ହିନ୍ଦୁ ରାଜା ଥିଲେ । ରାମଚନ୍ଦ୍ର

ଯୁଦ୍ଧରେ ପରାସ୍ତ ହେଲେ । ଦ୍ୱିତୀୟଟି କାକତୀୟମାନଙ୍କର ରାଜ୍ୟ । ଏହି ପ୍ରଦେଶର ନାମ ଥିଲା 'ତେଲିଙ୍ଗାନା' — ଏହି ପଦରୁହିଁ 'ତେଲଙ୍ଗା' ଶବ୍ଦର ଉତ୍ପତ୍ତି । ତୃତୀୟଟି ହୟ୍ସଲ ରାଜ୍ୟ । ଏହି ପ୍ରଦେଶର ଆଧୁନିକ ନାମ ମହୀଶୂର । ଦ୍ୱାରସମୁଦ୍ର ନାମକ ନଗର ଏହାର ରାଜଧାନୀ ଥିଲା । ଚତୁର୍ଥଟି ପାଣ୍ଡ୍ୟରାଜ୍ୟ ।

ଅଲ୍ଲାଉଦ୍ଦୀନ୍ ଦାକ୍ଷିଣାତ୍ୟରେ ପ୍ରଦେଶ ଜୟ ସଙ୍ଗେ ସଙ୍ଗେ ଲୁଣ୍ଠନାଦି କରି ନୂତନ ବଳ ପାଇଲେ । ଏପରି ବହୁ ଧନ ସଂଗ୍ରହ କରି ଦିଲ୍ଲୀକୁ ଫେରିଲେ । ବୃଦ୍ଧ ଜଲାଲୁଦ୍ଦୀନ୍ ଆଲାଉଦ୍ଦୀନଙ୍କୁ ଅଭ୍ୟର୍ଥନା କରିବାପାଇଁ ଦିଲ୍ଲୀ-ଦ୍ୱାରକୁ ଯିବା ମାତ୍ରେ, ନିଷ୍ଠୁର ବିଶ୍ୱାସଘାତକ ଆଲାଉଦ୍ଦୀନଙ୍କ ଆଦେଶରେ ତାଙ୍କ ସୈନିକ କେତେଜଣ ବୃଦ୍ଧ ସୁଲତାନଙ୍କୁ ହତ୍ୟା କରି ପକାଇଲେ । ପରେ କୃତଘ୍ନ ଆଲାଉଦ୍ଦୀନ ଦିଲ୍ଲୀ-ସିଂହାସନ ଅଧିକାର କଲେ ।

ଆଲାଉଦ୍ଦୀନ ଜଣେ ସୁଦକ୍ଷ ବୀର, ସୁନିପୁଣ ଶାସକ । କୌଣସି ଲୋକର ଜୀବନ ନଷ୍ଟ କରିବାକୁ ସେ ତିଳେ ମାତ୍ର ସଙ୍କୁଚିତ ହେଉ ନ ଥାନ୍ତି । ସେ ହିନ୍ଦୁଜାତିକୁ ଅନ୍ତରୁ ସହିତ ଘୃଣା କରୁଥାନ୍ତି । ତାଙ୍କଠାରେ ଦୟା ଧର୍ମ ଆଦୌ ନ ଥିଲା । କେହି ତାଙ୍କପ୍ରତି ସାମାନ୍ୟ ଶତ୍ରୁତା ଦେଖାଇବାକ୍ଷଣି, ସେ ତାହାକୁ ସବଂଶ ନଷ୍ଟ କରି ଦେଉଥିଲେ । ବିସ୍ତର କର-ଭାରରେ ସେ ହିନ୍ଦୁମାନଙ୍କୁ ଉତ୍ପୀଡ଼ନ କରିଦେଲେ । କରଦାନରେ ବିଳମ୍ବ ବା ହେଲା ଦେଖି ସେ ହିନ୍ଦୁମାନଙ୍କୁ ନିଷ୍ଠୁର ଦଣ୍ଡ ଦେଉଥିଲେ ।

କିନ୍ତୁ କେତେକ ବିଷୟରେ ସେ ପ୍ରଜାମାନଙ୍କର ମଙ୍ଗଳ କରି-ଥିଲେ । ସେ ନିଜେ ବଜାରରେ ବିକିହେବା ସମସ୍ତ ପଦାର୍ଥର ମୂଲ୍ୟ ନିର୍ଦ୍ଧାରଣ କରିଦେଲେ । ଏଣୁ ବେପାରରେ ଠକାମିର ଆଉ ସ୍ଥାନ ରହିଲା ନାହିଁ । ସେତେବେଳେ ମଙ୍ଗୋଲ୍‌ଜାତି ବହୁଥର ଭାରତ ଆକ୍ରମଣ କଲେ ।

କିନ୍ତୁ ଅଲାଉଦ୍ଦୀନ୍ ସେମାନଙ୍କ ଉପଦ୍ରବରୁ ପ୍ରଜାଙ୍କୁ ରକ୍ଷା କଲେ । ସେନେ ତାଙ୍କ ଆଦେଶରେ ପ୍ରାୟ ୨୦,୦୦୦ ମଙ୍ଗୋଲ୍ ନିହତ ହେଲେ ।

ମାଲିକାଫୁର ଅଲାଉଦ୍ଦୀନଙ୍କର ବିଶ୍ୱସ୍ତ ସେନାପତି । ଅଲାଉଦ୍ଦୀନ୍, ସୁଲତାନ୍ ହେବା ପରେ ୧୩୧୦ ସାଲରେ ମାଲିକାଫୁରଙ୍କୁ ସୈନ୍ୟ ସଙ୍ଗେ ଦାକ୍ଷିଣାତ୍ୟ ଜୟ କରିବାକୁ ପଠାଇଲେ । ମାଲିକାଫୁର ଦେବଗିରି, ଦ୍ୱାରସମୁଦ୍ର ପ୍ରଭୃତି ସ୍ଥାନ ଜୟ କଲେ ଏବଂ ବହୁ ନଗର ଲୁଣ୍ଠନ କଲେ । କେତେକ ଜଣ ରାଜା ଅଲାଉଦ୍ଦୀନଙ୍କ ଅଧୀନତା ସ୍ୱୀକାର କରିବାକୁ ବାଧ୍ୟ ହେଲେ ।

୧୩୦୦ ସାଲରେ ଅଲାଉଦ୍ଦୀନ୍ ରଣଥମ୍ବର ନାମକ ରାଜପୁତ ଦୁର୍ଗ ଆକ୍ରମଣ କଲେ, କିନ୍ତୁ ରାଜପୁତମାନଙ୍କ ଦ୍ୱାରା ପରାସ୍ତ ହେଲେ । ୧୩୦୧ ସାଲରେ ସେ ପୁଣି ରଣଥମ୍ବର ଆକ୍ରମଣ କରି ତାହା ନିଜ ଅଧିକାରରେ ଆଣିଲେ ।

୧୩୦୩ ସାଲରେ ରାଜପୁତମାନଙ୍କର ଚିତୋର ଦୁର୍ଗ ଅବରୋଧ କଲେ । ଚିତୋର-ରାଣୀ ପଦ୍ମିନୀଙ୍କ ଚରିତ ତୁମେମାନେ ଶୁଣିଥିବ । ସେ ଅତି ସୁନ୍ଦରୀ, ସତୀ ଓ ଗୁଣବତୀ ଥିଲେ । ତାଙ୍କୁ ପତ୍ନୀରୂପେ ପାଇବା ଉଦ୍ଦେଶ୍ୟରେ ଅଲାଉଦ୍ଦୀନ ସସୈନ୍ୟ ଚିତୋରକୁ ଯାଇ ଗଡ଼ଟି ଘେରାଉ କରି ରହିଲେ । ରାଜପୁତମାନେ ଦୁର୍ଗ ମଧ୍ୟରେ ରହି ବହୁକାଳ ଖୁବ୍ ସାହସ ଓ ଉତ୍ସାହ ସହ ଆତ୍ମରକ୍ଷା କଲେ । ସେମାନଙ୍କୁ ବଳବାନ୍ ଥିବାର ଦେଖି, ଅଲାଉଦ୍ଦୀନ କୌଶଳ ପ୍ରୟୋଗରେ ପଦ୍ମିନୀଙ୍କୁ ଲାଭ କରିବାକୁ ଚେଷ୍ଟିତ ହେଲେ ।

ସେ ଚିତୋରରାଣା ଭୀମସିଂହଙ୍କୁ କହି ପଠାଇଲେ ଯେ, ସେ ଥରେ ପଦ୍ମିନୀଙ୍କୁ ଦେଖି ପାରିଲେ ଦିଲ୍ଲୀକୁ ଫେରି ଯିବେ । ଏହା ଶୁଣି

ପଦ୍ମିନୀ ଅଲାଉଦ୍ଦୀନଙ୍କୁ ନିଜ ରୂପ ଦେଖାଇବାକୁ ଇଚ୍ଛା କଲେ । ସୁଣା ଅଲାଉଦ୍ଦୀନଙ୍କୁ ଏକାକୀ ଅନ୍ତଃପୁରକୁ ନେଇ ତାଙ୍କୁ ଦର୍ପଣରେ



ଦର୍ପଣରେ ପଦ୍ମିନୀ

ପଦ୍ମିନୀଙ୍କର ପ୍ରତିବିମ୍ବ ଦେଖାଇଲେ । ସୁଲତାନ୍ ପଦ୍ମିନୀଙ୍କ ରୂପରେ ମୁଗ୍ଧ ହୋଇ ଭୀମସିଂହଙ୍କ ସଙ୍ଗେ ଦୁର୍ଗ-ଦ୍ୱାରକୁ ଫେରିଲେ । ସେଠାରେ ଭୀମସିଂହଙ୍କୁ ନିଜ ସୈନିକମାନଙ୍କ ହାତରେ ବନ୍ଦୀ କରି ତାଙ୍କ ଶିବିରକୁ ନେଇଗଲେ ଏବଂ ରାଜପୁତମାନଙ୍କୁ ଅଭ୍ର ଥରେ କହି ପଠାଇଲେ ଯେ, ପଦ୍ମିନୀଙ୍କୁ ତାଙ୍କଠାକୁ ନ ଛାଡ଼ିଲେ ସେ ଭୀମସିଂହଙ୍କୁ କଦାପି ମୁକ୍ତି ଦେବେ ନାହିଁ ।

ଏଣୁ ରାଜପୁତମାନେ ବି ଏକ କୌଶଳ ପ୍ରୟୋଗ କଲେ । ପଦ୍ମିନୀ ସାତଶତ ଦାସୀଙ୍କ ସଙ୍ଗେ ସୁଲତାନଙ୍କ ନିକଟକୁ ଯିବେ ବୋଲି ମତ ଜଣାଇଲେ । ଅଲାଉଦ୍ଦୀନ ଏହି ପ୍ରସ୍ତାବରେ ସମ୍ମତ ହେଲେ । ପଦ୍ମିନୀ ଗୁପ୍ତଭାବରେ ସାତଶତ ଗୋଟି ପାଲିଙ୍କିରେ ୧୪୦୦ ରାଜପୁତ-ବୀରଙ୍କୁ ବସାଇ ନିଜେ ଏକ ପାଲିଙ୍କିରେ ବସି ସେମାନଙ୍କ ସହିତ ଅଲାଉଦ୍ଦୀନଙ୍କ ଶିବିରକୁ ଗଲେ ଏବଂ ଭୀମସିଂହଙ୍କୁ ଶେଷ ଥର ଦେଖିବା ଛଳରେ ତାଙ୍କଠାକୁ ଯାଇ କୌଶଳରେ ପତିଙ୍କ ସଙ୍ଗେ ଚିତୋରକୁ ବାହୁଡ଼ିଲେ । ଏଣେ ୧୪୦୦ ରାଜପୁତ ଯୋଦ୍ଧା ଓ ପଠାଣ ସୈନ୍ୟ ମଧ୍ୟରେ ଭୀଷଣ ଯୁଦ୍ଧ ହେଲା । ଦେଖୁ ଦେଖୁ ସମସ୍ତ ରାଜପୁତ ଯୋଦ୍ଧା, ସୈନିକ ଏବଂ ଶେଷରେ ରାଣା ଯୁଦ୍ଧରେ ପ୍ରାଣ ଦେଲେ । ଏତେବେଳେ ପତିବ୍ରତା, ଧର୍ମପ୍ରାଣା ରାଜପୁତ ସ୍ତ୍ରୀମାନଙ୍କର ଜହର ଭିନ୍ନ ଅଉ ଗତି କଣ ? ଜହର କଣ ତୁମ୍ଭେମାନେ ତ ଜାଣିଛ । ପଦ୍ମିନୀ ଚିତୋରର ଅନ୍ୟାନ୍ୟ କୁଳନାରୀଙ୍କୁ ସଙ୍ଗେ ଧରି ପବିତ୍ର ଜହର-କୁଣ୍ଡରେ ଝାସ ଦେଲେ—ପଠାଣ ଅତ୍ୟାଚାରରୁ ରକ୍ଷା ପାଇଲେ । ସେହି ଜହର-କୁଣ୍ଡର ଚିହ୍ନ ଆଜିଯାଏଁ ଦେଖାଯାଏ । ସେହି କାଳଯୁଦ୍ଧରେ ଚିତୋର ଦୁର୍ଗ ଛାରଖାର ହୋଇ ଯାଇଥିଲା । ଅଲାଉଦ୍ଦୀନ ପଦ୍ମିନୀଙ୍କୁ ନ ପାଇ ନିରାଶ-ଚିତ୍ତରେ ଦିଲ୍ଲୀକୁ ବାହୁଡ଼ିଲେ ଏବଂ ୧୩୧୬ ସାଲରେ ପ୍ରାଣତ୍ୟାଗ କଲେ ।

# ଭାରତରେ ଆଫଗାନଶକ୍ତିର ବିଲୟ

ମହମ୍ମଦ ତୋଗଲକ୍ :—

ଘାଜିମଲ୍ଲିକ୍ ତୋଗଲକ ବଂଶର ଜଣେ ଲୋକ । ୧୩୨୧ ସାଲରେ ସେ ଅଲ୍ଲାଉଦ୍ଦୀନଙ୍କ ଶେଷ ବଂଶଧରକୁ ବଧ କରି ଦିଲ୍ଲୀର ସୁଲତାନ୍ ହେଲେ । ସୁଲତାନ୍ ହେବା ମାତ୍ରେ ତାଙ୍କର ନାମ ହେଲା ଘିଆଜୁଦ୍ଦୀନ ତୋଗଲକ୍ ସାହା । ସେ ୧୩୨୧ ଠାରୁ ୧୩୨୫ ପର୍ଯ୍ୟନ୍ତ ରାଜତ୍ୱ କଲେ । ଜୁନାଖାଁ ତାଙ୍କର ପୁତ୍ର ।

ଦାକ୍ଷିଣାତ୍ୟର ସାମନ୍ତ ରାଜାମାନେ ରୀତିମତ କର ନ ପଠାଇବାରୁ ସୁଲତାନ୍ ଜୁନାଖାଁଙ୍କୁ ସସୈନ୍ୟ ଦାକ୍ଷିଣାତ୍ୟକୁ ପଠାଇଲେ । ଜୁନାଖାଁ ଓରଙ୍ଗଲ୍ ଦୁର୍ଗ ଅବରୋଧ କଲେ । କିନ୍ତୁ ତାହା ଜୟ କରି ନ ପାରି ହତାଶ ହୃଦୟରେ ଦିଲ୍ଲୀକୁ ଫେରିଲେ । ସେ ଅଧିକ ସୈନ୍ୟ ଧରି ପୁଣି ଦାକ୍ଷିଣାତ୍ୟକୁ ଗଲେ; ଏଥର ଓରଙ୍ଗଲ୍ ଓ ବିଦାର ଦିଲ୍ଲୀ-ସୁଲତାନଙ୍କର ଅଧୀନସ୍ଥ ହୋଇ ପାରିଲା ।

ଜୁନାଖାନ୍ ଦାକ୍ଷିଣାତ୍ୟ ଜୟ କରି ଦିଲ୍ଲୀକୁ ଫେରିବା ବେଳକୁ ତାଙ୍କ ପିତା ବଙ୍ଗଦେଶକୁ ଚାଲିଯାଇ ଥିଲେ । ଅଳ୍ପ କେତେକଦିନ ପରେ ସୁଲତାନ୍ ଦିଲ୍ଲୀକୁ ଫେରିଲେ । ପିତାଙ୍କ ଅଭ୍ୟର୍ଥନା ସକାଶେ ଜୁନାଖାନ୍ ଗୋଟିଏ ମଣ୍ଡପ ଓ ସ୍ତମ୍ଭଣ୍ଡା ତିଆରି କରାଇଥିଲେ । ଘିଆଜୁଦ୍ଦୀନ ସେହି ମଣ୍ଡପରେ ପହଞ୍ଚିବା ମାତ୍ରେ ତାଙ୍କ ମୁଣ୍ଡ ଉପରେ ସ୍ତମ୍ଭଣ୍ଡାଟି ମାଡ଼ି ବସିଲା— ସୁଲତାନ୍ ପ୍ରାଣ ହରାଇଲେ । ଶୁଣାଯାଏ, ପିତାଙ୍କୁ ମାରିଦେବା ଉଦ୍ଦେଶ୍ୟରେ ଜୁନାଖାନ୍ ଏହି ଉପାୟ ପାଞ୍ଚିଥିଲେ । ସେ ଯାହାହେଉ ଦିଲ୍ଲୀ-ଗାଦି ଚଢ଼ିଲେ । ପରେ ତାଙ୍କ ନାମ ହେଲା ମହମ୍ମଦ ତୋଗଲକ୍ ।

ସେ ୧୩୨୫ ଠାରୁ ୧୩୫୦ ଯାଏଁ ଦିଲ୍ଲୀ-ସୁଲତାନ୍ ରହିଲେ। ତାଙ୍କ ସ୍ୱଭାବ ବିଚିତ୍ର ଧରଣର। ତାଙ୍କଠାରେ ଗୁଣ ଓ ଦୋଷ ମିଶିଥିଲା। ସେ ଅତ୍ୟନ୍ତ ଚତୁର, ଜ୍ଞାନୀ ଓ ବିଦ୍ୟାପ୍ରିୟ; କିନ୍ତୁ ସେ ଅନେକ ସମୟରେ ବିନ୍ଦୁ ବିବେକହୀନ ମନ୍ଦ କାର୍ଯ୍ୟ କରିବାରୁ ଲୋକେ ତାଙ୍କୁ ପାଗଳ ରାଜା ବୋଲି ଡାକୁଥିଲେ। ମହମ୍ମଦ ରାଜ୍ୟ ମଧ୍ୟରେ ଅନେକ ଔଷଧାଳୟ ଓ ପାନ୍ଥଶାଳା ବସାଇଲେ, ଦରିଦ୍ରଲୋକଙ୍କୁ ବହୁ ଧନ ବିତରଣ କଲେ। ସେ ଆରବୀ ଓ ପାରସୀ ଭାଷାରେ ବିସ୍ତର ଜ୍ଞାନ ଅର୍ଜନ କରିଥିଲେ। ତାଙ୍କର ହାତଲେଖା ବଡ଼ ସୁନ୍ଦର, ସ୍ମୃତି ଶକ୍ତି ଅତି ଅଦ୍ଭୁତ। ଗ୍ରୀକ୍ ତର୍କ ଓ ଦର୍ଶନ ଶାସ୍ତ୍ରରେ ତାଙ୍କର ଖୁବ୍ ବ୍ୟୁତ୍ପତ୍ତି ଥିଲା। ଗଣିତ ଓ ବିଜ୍ଞାନରେ ତାଙ୍କର ଢେର ଜ୍ଞାନ ଥିଲା। ମହମ୍ମଦ ଜଣେ ବିଶୁଦ୍ଧ ମୁସଲ-ମାନ—ସର୍ବଦା କୋରାଣକୁ ମାନି ଚଳୁଥାନ୍ତି।

ଏହି ସକଳ ଗୁଣ ସତ୍ତ୍ୱେ, ତାଙ୍କର ଶାସନ ଦୋଷଯୁକ୍ତ ଥିଲା; କାରଣ ସେ କୌଣସି କାର୍ଯ୍ୟ ଭାବି ଚିନ୍ତି କରୁ ନ ଥାନ୍ତି। ସେ ଜଣେ ଅହଙ୍କାରୀ ଏକଗୁଆଁ ଲୋକ—ଯାହା କରିବାକୁ ହଟ ବସିବେ ତାହା କରିବେହିଁ କରିବେ—ପ୍ରଜାମାନେ ମରି ସରି ଯାନ୍ତୁ, ଚିନ୍ତା ନାହିଁ; ରାଜ୍ୟ ଭୁଡ଼ି ବୁଡ଼ି ଯାଉ, ଖାତିର ନାହିଁ।

ସେ ଥରେ ପାରସ୍ୟ ଦେଶ ଜୟ କରିବାକୁ ବାହାରିଲେ; କିନ୍ତୁ ଏହି ଚେଷ୍ଟାରେ ଧନ ହାନି, ଲୋକକ୍ଷୟ ମାତ୍ର ସାର ହେଲା। ସେ ୧୩୩୭ ସାଲରେ ଚୀନାଦେଶ ଜିଣିବା ଉଦ୍ଦେଶ୍ୟରେ ସୈନ୍ୟ ପଠାଇଲେ। କିନ୍ତୁ ହିମାଳୟର ବରଫ-ଧକ୍କାରେ କେତେକ ସୈନ୍ୟ ମଲେ ଏବଂ ଅବଶିଷ୍ଟ ଚୀନବାସିଙ୍କ ହାତରେ ପରାଭବ ପାଇଲେ। ଥରେ ମଙ୍ଗୋଲମାନେ ଦିଲ୍ଲୀ ଆକ୍ରମଣ କରିବାକୁ ଆସିଲେ; ମହମ୍ମଦ ସେମାନଙ୍କୁ ଲାଞ୍ଚ ଲୁଞ୍ଚା ଦେଇ ସନ୍ତୁଷ୍ଟ କରି ପକାଇଲେ।

ତାଙ୍କ କାର୍ଯ୍ୟରେ ସାମନ୍ତ ରାଜା ଓ ପ୍ରଜାମାନେ ସମସ୍ତେ ଅସନ୍ତୁଷ୍ଟ ହୋଇ ଉଠିଲେ । ଦିନେ ସେ ଖଣ୍ଡିଏ ବେନାମୀ ପତ୍ର ପାଇଲେ—ସେଥିରେ ତାଙ୍କର କୁତ୍ସାରଚନା କରାଯାଇ ଥିଲା । ଏଣୁ ମହମ୍ମଦ ଅଗ୍ନିଶର୍ମା ହୋଇ ଦିଲ୍ଲୀବାସିଙ୍କୁ ଦଣ୍ଡଦେବାକୁ ବାହାରିଲେ । ସେ ମଧ୍ୟ-ଭାରତରେ ଦେବଗିରି ବୋଲି ଗୋଟିଏ ଦୁର୍ଗ ସ୍ଥାପନ କଲେ, ତାହାର ନାମ ରଖିଲେ ଦୌଲତାବାଦ୍ । ଏହି ନୂତନ ଦୁର୍ଗକୁ ତାଙ୍କ ରାଜଧାନୀ ସ୍ଥାପିବା ଇଚ୍ଛାରେ ସେ ଆଦେଶ ପ୍ରଚାର କଲେ ଯେ, ଏକଦିନ ମଧ୍ୟରେ ସମସ୍ତ ଦିଲ୍ଲୀବାସୀ ପିଲାପିଚିକା, ପେଡ଼ି ପୁଟୁଳି ଧରି ଦୌଲତା-ବାଦକୁ ଚାଲିଯିବେ । ସୁଲତାନଙ୍କ କଡ଼ା ଆଦେଶ ! କଣ କରିବେ ? ସମସ୍ତେ ସେହିକ୍ଷଣି ଦିଲ୍ଲୀ ଛାଡ଼ି ସୁଦୂର ଦୌଲତାବାଦକୁ ଚାଲିଲେ । ଦିଲ୍ଲୀରେ ବିରାଡ଼ି କୁଆଟିଏ ବି ଦେଖିବାକୁ ମିଳିଲା ନାହିଁ । ବାଟରେ ଅନେକ ପ୍ରଜା ନ ଖାଇ ନ ପିଇ ମଲେ; ଅବଶିଷ୍ଟ ନୂତନ ରାଜଧାନୀରେ ଘରଦ୍ୱାର, ଖାଦ୍ୟପେୟ ବସ୍ତୁ ନ ପାଇ ବଡ଼ ହନ୍ତସନ୍ତ ହେଲେ—କେତେ ଜଣ ବି ସେଠାରେ ପ୍ରାଣ ହରାଇଲେ । ମହମ୍ମଦଙ୍କର ଚେତା ବସିଲା—ସେ ମୃତାବଶିଷ୍ଟ ପ୍ରଜାଙ୍କୁ ଦିଲ୍ଲୀକୁ ଫେରିବାକୁ ପୁଣି ଆଦେଶ ଦେଲେ । ସେମାନେ ଅଗତ୍ୟା ଦିଲ୍ଲୀକୁ ବାହୁଡ଼ିଲେ, ମାର୍ଗରେ ସେମାନଙ୍କ କଷ୍ଟର ଆଉ ସୀମା ରହିଲା ନାହିଁ ।

ମଙ୍ଗୋଲମାନଙ୍କୁ ଉତ୍କୋଚ ଦେବାରେ ଏବଂ ଚୀନ-ପାରସ୍ୟ-ଜୟ ଚେଷ୍ଟାରେ ରାଜକୋଷର ବହୁ ଧନ ନଷ୍ଟ ହେଲା । ଏଣୁ ମହମ୍ମଦ ପ୍ରଜା-ମାନଙ୍କ ଉପରେ ଉଚ୍ଚ କର ବସାଇଲେ । ଏଥିରେ ପ୍ରଜାଙ୍କର ଭାରି କଷ୍ଟ ହେଲା । କର ଦେଇ ନ ପାରିବା ଲୋକେ କଠିନ ରାଜଦଣ୍ଡ ଭୋଗିଲେ; କେତେକ ଲୋକ କର ଭୟରେ ଘର ଛାଡ଼ି ବନରେ ପଶିଲେ । ସେଠାରେ ବି ସେମାନଙ୍କର ରକ୍ଷା ନାହିଁ—ସୁଲତାନ୍ ସେମାନଙ୍କୁ ବନ୍ୟ

ପଶୁ ଭଳ ଲଖଇ ମାର ଦେଲେ । ଫଳରେ ରାଜ୍ୟର କୃଷି ଓ ବାଣିଜ୍ୟ ବ୍ୟବସାୟ ସବୁ ଶିଥିଳ ହୋଇ ପଡ଼ିଲା । ରାଜ୍ୟ ମଧ୍ୟରେ ରୁପା ଟଙ୍କା ବଦଳରେ ତାମ୍ର ମୁଦ୍ରା ବ୍ୟବହାର କରିବା ପାଇଁ ମହମ୍ମଦ ଆଦେଶ ପ୍ରଚାର କଲେ । ଏହାର ଫଳରେ ବହୁଧନ ନଷ୍ଟ ହେଲା । ପରେ ନିଜ ଦୋଷ ବୁଝିପାରି ମହମ୍ମଦ ତାଙ୍କର ଏହି ଆଦେଶ ରହିତ କରି ଦେଲେ । ଉପରୋକ୍ତ ସମସ୍ତ କାରଣରୁ ରାଜ୍ୟରେ ଭୟଙ୍କର ଦୁର୍ଭିକ୍ଷ ପଡ଼ିଲା ।

ପଞ୍ଜାବ, ଯୁକ୍ତ ପ୍ରଦେଶ, ବହାର, ଭରୁହଚ୍, ବଙ୍ଗଳା, ସିନ୍ଧୁ, ମାଳବ ଓ ରାଜପୁତ ରାଜାମାନେ ଏବଂ ଦାକ୍ଷିଣାତ୍ୟର କେତେ ଜଣ ରାଜା ମହମ୍ମଦ ତୋଗଲୁକଙ୍କର ଅଧୀନସ୍ଥ ଥିଲେ । ତାଙ୍କର ନିଷ୍ଠୁର କ୍ରିୟା-କଳାପ ଦେଖି ସେମାନେ ସମସ୍ତେ ତାଙ୍କ ବିରୁଦ୍ଧରେ ଉଠିଲେ । ପ୍ରଥମେ ସେ ଦାକ୍ଷିଣାତ୍ୟର ବିଦ୍ରୋହ ଦମନ କଲେ । କିନ୍ତୁ ପରେ ତାଙ୍କ ଶକ୍ତି ଶିଥିଳ ହୋଇ ପଡ଼ିଲା । ୧୩୩୮ ସାଲରେ ବଙ୍ଗଳା ଓ ଗୁଜରାଟର ରାଜାମାନେ ଦିଲ୍ଲୀ-ସୁଲତାନଙ୍କ ସଙ୍ଗେ ଯୁଦ୍ଧ କରି ଦିଲ୍ଲୀ-ଅଧୀନତାରୁ ମୁକ୍ତ ହେଲେ ।

୧୩୪୪ ସାଲରେ ମହମ୍ମଦ ତେଲଙ୍ଗାନା ପ୍ରଦେଶ ଆକ୍ରମଣ କଲେ । କିନ୍ତୁ ଓରଙ୍ଗଲ୍‌ରେ ପ୍ରବେଶ କରିବା ମାତ୍ରେ ତାଙ୍କର ଅଧିକାଂଶ ସୈନ୍ୟ ହଇଜା ରୋଗରେ ପ୍ରାଣ ହରାଇଲେ, ନିଜେ ବି ସେହି ରୋଗରେ ଆକ୍ରାନ୍ତ ହେଲେ । ଏଣୁ ସେ ତେଲଙ୍ଗାନା ଛାଡ଼ି ଆସିବାକୁ ବାଧ୍ୟ ହେଲେ । ଫଳରେ ତେଲଙ୍ଗାନା ସ୍ୱାଧୀନ ହେଲା । ମହମ୍ମଦ ଏପରି ଦାକ୍ଷିଣାତ୍ୟରେ ରାଜ୍ୟ ପରେ ରାଜ୍ୟ ହରାଇ ଗୁଜରାଟ୍‌କୁ ଗଲେ, ପରେ ସେଠାରୁ ସିନ୍ଧୁ ପ୍ରଦେଶ ଆଡ଼େ ଯାତ୍ରା କଲେ । ସେଠାରେ ତାଙ୍କର ସ୍ୱାସ୍ଥ୍ୟ ନଷ୍ଟ ହେଲା—ଉତ୍କଟ ଜ୍ୱରରେ ପୀଡ଼ିତ ହୋଇ ୧୩୫୧ ସାଲରେ ପ୍ରାଣତ୍ୟାଗ କଲେ ।

# ଫିରୋଜ୍‌ସାହା

ମହମ୍ମଦ ତୋଗଲକଙ୍କ ପରେ ଫିରୋଜ୍‌ସାହା ଦିଲ୍ଲୀର ସୁଲତାନ ହେଲେ; ଏହାଙ୍କର ରାଜତ୍ୱ ଅପେକ୍ଷାକୃତ ଭଲ । ଫିରୋଜ୍ ସାହା ଯୁଦ୍ଧ ଭଲ ଜାଣି ନ ଥିଲେ; ଏଣୁ ବଙ୍ଗ ଯୁଦ୍ଧରେ ସେ ପରାଭବ ପାଇଲେ । ସେ ଜଣେ ସରଳ, ନମ୍ରପ୍ରକୃତିର ମୁସଲମାନ କିନ୍ତୁ ସେ ମୃଗୟା, ସୁରାପାନାଦି ବ୍ୟସନରେ ଆସକ୍ତ ଥିଲେ । ସେ ଅନେକ ନଗର, ଦୁର୍ଗ ଓ ବିଦ୍ୟାଳୟ ସ୍ଥାପନ କଲେ, କେତୋଟି ମସ୍‌ଜିଦ୍ ତୋଳାଇଲେ ଏବଂ କେତେଗୋଟି କେନାଲ ଖୋଳାଇଲେ । ତାଙ୍କ ସମୟରେ ଫିରୋଜାବାଦ୍, ଜାନ୍‌ପୁର ଓ ହିସାର ଫିରୋଜା ନାମରେ ତିନିଗୋଟି ନଗର ସ୍ଥାପିତ ହେଲା । ସେ କେତେଗୋଟି ପୁରାତନ ଅଟ୍ଟାଳିକାର ମରାମତି କରାଇ ଥିଲେ ।

ଖାନ୍ ଜାହାନ୍ ଫିରୋଜ୍‌ସାହାଙ୍କର ମନ୍ତ୍ରୀ । ସେ ଆଗେ ହିନ୍ଦୁ ଥିଲେ, କିନ୍ତୁ ମନ୍ତ୍ରୀ ହେବା ପରେ ଇସ୍‌ଲାମ ଧର୍ମ ଗ୍ରହଣ କଲେ । ସେ ମରିଯିବାରୁ ତାଙ୍କ ପୁଅ ମନ୍ତ୍ରୀ ପଦରେ ନିଯୁକ୍ତ ହେଲେ ।

ଫିରୋଜ୍‌ସାହାଙ୍କ ସମୟରେ 'ଜାଗିର୍' ପ୍ରଥା ପ୍ରଚଳିତ ହେଲା, ଅର୍ଥାତ୍ ରାଜକର୍ମଚାରୀମାନଙ୍କ ବେତନ ସ୍ୱରୂପ ( ଟଙ୍କା ଦିଆ ନ ଯାଇ ) ଭୂମି ଖଞ୍ଜା ହେଲା । ତାଙ୍କ ଶାସନରେ ପ୍ରଜାମାନେ ସୁଖୀ ଥିଲେ । ରାଜ୍ୟର ସମ୍ପତ୍ତି ବଢ଼ିଲା । ସେ ବଡ଼ ଦୟାଳୁ—ଦୋଷିମାନଙ୍କୁ କଠିନ, କ୍ରୂର ଦଣ୍ଡ ଦେଉ ନ ଥାନ୍ତି ।

ଫିରୋଜ୍‌ସାହା ୧୩୫୧ ସାଲରେ ବଙ୍ଗରାଜାଙ୍କ ସଙ୍ଗେ ଲଢ଼ାଇ କରି ତାଙ୍କୁ ହରାଇ ଦେଲେ; କିନ୍ତୁ ବଙ୍ଗ ତାଙ୍କ ଅଧୀନରେ ଥିଲା ନାହିଁ । ଫିରୋଜ୍ ପୁଣି ଯୁଦ୍ଧ କଲେ । ୧୩୬୦ ରେ ସନ୍ଧି ହେଲା—ସେ

ବଙ୍ଗର ସ୍ୱାଧୀନତା ସ୍ୱୀକାର କଲେ । ସେ ଦାକ୍ଷିଣାତ୍ୟର ବାହାର ସହିତ ଯୁଦ୍ଧ କରିବାକୁ ସାହସୀ ହେଲେ ନାହିଁ । ସେ ଗୁଜରାଟ୍ ଓ ସିନ୍ଧୁ ପ୍ରଦେଶ ସଙ୍ଗେ ଯୁଦ୍ଧ ଚଳାଇ ଭାରି ଯନ୍ତ୍ରଗ୍ରସ୍ତ ହେଲେ ।

୧୩୮୮ ସାଲରେ ଫିରୋଜଶାହାଙ୍କର ମୃତ୍ୟୁ ଘଟିଲା । ତାଙ୍କ ପରେ ରାଜ୍ୟରେ ଭୟଙ୍କର ଗୋଳମାଳ ବିଶୃଙ୍ଖଳା ଜନ୍ମିଲା । ମହମ୍ମଦ ତୋଗଲକଙ୍କ ମୂର୍ଖତା ଓ ବାତୁଳତା ଯୋଗୁଁ ଭାରତର ଆଫଗାନ୍ ରାଜ୍ୟ ଦୁର୍ବଳ ହୋଇଯାଇ ଥିଲା । ଫିରୋଜଶାହାଙ୍କ ପରବର୍ତ୍ତୀ ସୁଲତାନ-ମାନଙ୍କ ଅବିବେକତାରେ ରାଜ୍ୟଟି ଆହୁରି ଦୁର୍ବଳ ହୋଇ ପଡ଼ିଲା—ଦିଲ୍ଲୀ ଓ ତନ୍ନିକଟବର୍ତ୍ତୀ ପ୍ରଦେଶ ଭିନ୍ନ, ଭାରତର ଅନ୍ୟ କୌଣସି ସ୍ଥାନରେ ଦିଲ୍ଲୀ-ସୁଲତାନଙ୍କର ଅଧିକାର ଆଉ ଚଳିଲା ନାହିଁ । ଭାରତରେ ପୁନର୍ବାର ବିଭିନ୍ନ ସ୍ୱତନ୍ତ୍ର ରାଜ୍ୟ ସ୍ଥାପିତ ହେଲା । ବିଦେଶୀମାନେ ଆସି ଭାରତ ଆକ୍ରମଣ କରିବାକୁ ଲାଗିଲେ । ଏହି ସମୟରେ ବୈଦେଶିକ ଶତ୍ରୁମାନଙ୍କ ମଧ୍ୟରେ ତୈମୁରଙ୍କ ନାମ ବିଶେଷ ଉଲ୍ଲେଖଯୋଗ୍ୟ ।



## ବିଜୟ ନଗର ଓ ବାହାମନି ରାଜ୍ୟ

ବିଜୟନଗର ତୁଙ୍ଗଭଦ୍ରା ନଦୀର ଦକ୍ଷିଣ ତୀରରେ ୧୩୩୬ ସାଲରେ ହରିହର ଓ ବୁକ୍କାରାୟ ନାମକ ଭ୍ରାତାଦ୍ୱୟଙ୍କଦ୍ୱାରା ପ୍ରଥମେ ସ୍ଥାପିତହେଲା । ପରେ ତାହା କୃଷ୍ଣାନଦୀଠାରୁ ସମସ୍ତ ଦାକ୍ଷିଣାତ୍ୟରେ ବ୍ୟାପ୍ତ ହେଲା । ତୁଙ୍ଗଭଦ୍ରାଠାରେ ନଗର ସ୍ଥାପନ କଲେ । ମୁସଲମାନ ରାଜାମାନଙ୍କ ଦ୍ୱାରା ପୀଡ଼ା ପାଇ ଅନ୍ୟ ରାଜ୍ୟରେ ଯେଉଁ ହିନ୍ଦୁମାନେ ଥିଲେ, ସେମାନେ ଏହି ହିନ୍ଦୁରାଜ୍ୟ ବିଜୟନଗରରେ ଆସି ନିବାସ କରିବାକୁ ଲାଗିଲେ ।

ବିଜୟନଗର ସ୍ଥାପିତ ହେବାର ୧୧ ବର୍ଷ ପରେ ଦିଲ୍ଲୀସୁଲତାନଙ୍କ ପ୍ରତିନିଧି ଜାଫରଖାଁ ମହମ୍ମଦ ତୋଗଲକଙ୍କ ନାମରେ ଦାକ୍ଷିଣାତ୍ୟରେ 'ବାହାମନି' ରାଜ୍ୟ ସ୍ଥାପନ କଲେ । କୁଲବର୍ଗ ନାମକ ନଗର ତାଙ୍କର ରାଜଧାନୀ ହେଲା ।

ବାହାମନି ରାଜ୍ୟ ଗୋଟିଏ ଖାଣ୍ଟି ମୁସଲମାନ ରାଜ୍ୟ । ଏହା କୃଷ୍ଣାନଦୀ ଠାରୁ ଉତ୍ତରରେ ତପ୍ତି ନଦୀ ଯାଏଁ ବ୍ୟାପିଥିଲା । ତାହାର ପୂର୍ବରେ ତେଲଙ୍ଗାନା ରାଜ୍ୟ ଥିଲା । ବାହାମନି-ସୁଲତାନ ଓ ବିଜୟନଗର ରାଜାଙ୍କ ମଧ୍ୟରେ ବାରମ୍ବାର ଯୁଦ୍ଧ ହେଉଥିଲା । ତୁଙ୍ଗଭଦ୍ରା ଓ କୃଷ୍ଣାନଦୀର ମଧ୍ୟ ଭାଗରେ ଦୁଇଟି ପ୍ରଧାନ ସ୍ଥାନ ଥିଲା— ରାୟଚୁର, ମୁଦ୍‌ଗଲ୍ । ଏଠାରେ ଦୁଇ ଗୋଟି ପ୍ରଧାନ ଦୁର୍ଗ ସୁଲତାନମାନଙ୍କ ଅଧୀନରେ ଥାଏ । ଏହି ଦୁଇଟି ସ୍ଥାନ ବିଜୟନଗରର ଦ୍ୱାର ସଦୃଶ; ଏଣୁ ବିଜୟନଗରର ରାଜାମାନେ ଏହି ସ୍ଥାନ ଜୟ କରିବା ଉଦ୍ଦେଶ୍ୟରେ ବାହାମନି ରାଜ୍ୟ ସହିତ ଅନେକ ଥର ଯୁଦ୍ଧ କରିଥିଲେ ।

ବୁକ୍କାରାୟ ୧୩୭୬ ଯାଏଁ ବିଜୟନଗରର ରାଜା ହୋଇଥିଲେ । ତାଙ୍କର ଅନେକ ସମୟ ବାହାମନି ଦେଶ ସହିତ ଯୁଦ୍ଧ କରିବାରେ କଟି ଯାଇଥିଲା ।

୧୩୭୯ ରେ ଦ୍ୱିତୀୟ ହରିହର ବିଜୟନଗରର ରାଜା ହେଲେ । ତାଙ୍କ ସମୟରେ ବିଜୟନଗର ରାଜ୍ୟ କାଞ୍ଚି ଯାଏଁ ବିସ୍ତୃତ ହୋଇଥିଲା ।

୧୪୦୬ ଠାରୁ ୧୪୧୦ ପର୍ଯ୍ୟନ୍ତ ପ୍ରଥମ ଦେବରାୟ ବିଜୟନଗରର ସିଂହାସନରେ ବସିଲେ । ସେତେବେଳେ ଫିରୋଜ ବାହାମନିର ସୁଲତାନ । ସେ ବିଜୟନଗର ରାଜ୍ୟରେ ପ୍ରବେଶ କରିବାରୁ ଦେବରାୟ ଅଗତ୍ୟା ତାଙ୍କ ସହିତ ସନ୍ଧି କଲେ ଏବଂ ଦୁଇ ରାଜ୍ୟର ସ୍ନେହ ସମ୍ବନ୍ଧ ସୁଦୃଢ଼ କରିବା ଇଚ୍ଛାରେ ନିଜ କନ୍ୟାଙ୍କୁ ପ୍ରଦାନ କଲେ । ସୁଲତାନ

ତାଙ୍କ କନ୍ୟାର ପାଣିଗ୍ରହଣ କଲେ ସୁଦ୍ଧା ଶତ୍ରୁତ୍ୱ ଛାଡ଼ିଲେ ନାହିଁ । ୧୪୧୦ ଠାରୁ ୧୪୬୧ ଯାଏଁ ବିଜୟ ରାଜା ହେଲେ; ତାଙ୍କ ମୃତ୍ୟୁପରେ ଦ୍ୱିତୀୟ ଦେବରାୟ ରାଜା ହୋଇ ବାହ୍ମନି ସୁଲତାନ ଅହମଦସାହା ସହିତ ଯୁଦ୍ଧ କଲେ; ଅହମଦସାହାଙ୍କଦ୍ୱାରା ଅନେକ ହିନ୍ଦୁ ସୈନ୍ୟ ନିହତ ହୋଇଥିଲେ । ଦ୍ୱିତୀୟ ଦେବରାୟ ୧୪୪୮ ରେ ପ୍ରାଣତ୍ୟାଗ କଲେ । ତାଙ୍କ ସମୟରେ ଅବଦୁର ରାଜକ ନାମକ ହିରାଟ ଦେଶର ଜଣେ ଲୋକ ଭାରତକୁ ରାଜଦୂତ ହୋଇ ଆସିଥିଲେ । ସେ ବିଜୟ-ନଗରର ପ୍ରଖ୍ୟାତି ଶୁଣି ତାହାକୁ ଦେଖିବା ଉଦ୍ଦେଶ୍ୟରେହିଁ ଏଠାକୁ ଆସିଥିଲେ ।

କୁଲବର୍ଗ ପ୍ରଥମେ ବାହ୍ମନି ରାଜ୍ୟର ରାଜଧାନୀ ଥିଲା । ନବମ ସୁଲତାନ ଅହମ୍ମଦସାହା ଏହି ନଗରରେ ରୋଗରେ ପୀଡ଼ିତ ହେଲେ । ତେଣୁ ନଗରକୁ ଅସ୍ୱାସ୍ଥ୍ୟକର ଓ ଅଶୁଭ ମନେକରି ସେ ୬୦ ମାଇଲ ଦୂରବର୍ତ୍ତୀ ବିଦାରକୁ ରାଜଧାନୀଟି ଉଠାଇ ନେଲେ । ବିଦାର ଦାକ୍ଷିଣାତ୍ୟ ମଧ୍ୟରେ ପ୍ରଧାନ ସ୍ୱାସ୍ଥ୍ୟକର ସ୍ଥାନ । କୁଲବର୍ଗଠାରୁ ସବୁ ଗୁଣରେ ବିଦାର ଅଧିକ ।

ବାହ୍ମନି ବଂଶର ଶେଷ ରାଜା ମହମ୍ମଦସାହା ୧୪୮୨ ଠାରୁ ୧୫୧୮ ପର୍ଯ୍ୟନ୍ତ ରାଜତ୍ୱ କଲେ । ସେ ସିଂହାସନ ଆରୋହଣ କରିବା ସମୟରେ ୧୨ ବର୍ଷର ବାଳକ ମାତ୍ର; ତେଣୁ ରାଜ୍ୟର କୌଣସି ଅଧିକାର ତାଙ୍କ ହାତରେ ନ ରହି ମନ୍ତ୍ରିମାନଙ୍କ ହାତରେ ଥିଲା । ବାହ୍ମନି ରାଜ୍ୟ ପୂର୍ବରୁ ଚାରିଗୋଟି ପ୍ରଧାନ ଖଣ୍ଡରେ ବିଭକ୍ତ ହୋଇଥିଲା, ପ୍ରତ୍ୟେକ ଖଣ୍ଡରେ ଜଣେ ଜଣେ ରାଜପ୍ରତିନିଧି ନିଯୁକ୍ତ ହୋଇଥିଲେ । ଯେତେ-ବେଳେ ସୁଲତାନ ନିତାନ୍ତ ଦୁର୍ବଳ, ଅକ୍ଷମ, ଆଳସ୍ୟପରାୟଣ ଓ ବିଳାସ-ବିଭୋର ବୋଲି ଜଣାଗଲା, ସେତେବେଳେ ପ୍ରାଦେଶିକ ପ୍ରତିନିଧିଗଣ ସୁଲତାନଙ୍କ ଆଧିପତ୍ୟ ନ ମାନି ନିଜ ନିଜର ସ୍ୱାତନ୍ତ୍ର୍ୟ ଘୋଷଣା କଲେ ।

ତେଣୁ ଗୋଟିଏ ବାହାମନ ରାଜ୍ୟ ପରିବର୍ତ୍ତରେ ୫ ଗୋଟି ସ୍ୱତନ୍ତ୍ର ରାଜ୍ୟ ପ୍ରତିଷ୍ଠିତ ହେଲା – ବେରାରରେ ଇମାଦସାହି ବଂଶ, ଅହମ୍ମଦ ନଗରରେ ନିଜାମସାହି ବଂଶ, ବିଦାରରେ ବାରିଦସାହି ବଂଶ, ଗୋଲକୁଣ୍ଡାରେ କୁତୁବସାହି ବଂଶ ଓ ବିଜାପୁରରେ ଆଦିଲସାହି ବଂଶ ସ୍ୱତନ୍ତ୍ରଭାବରେ ରାଜତ୍ୱ କରିବାକୁ ଲାଗିଲେ ।



## ୟୁସୁଫ ଆଦିଲସାହା

ବିଜାପୁର ପ୍ରଥମେ ବାହାମନ ରାଜ୍ୟର ଗୋଟିଏ ଅଧୀନ ପ୍ରଦେଶ ଥିଲା, ମାତ୍ର ମହମ୍ମଦସାହା ବାହାମନଙ୍କ ଦୁର୍ବଳ ରାଜତ୍ୱରେ ଏହି ପ୍ରଦେଶ ସ୍ୱତନ୍ତ୍ର ହେଲା । ଏହି ପ୍ରଦେଶର ପ୍ରଥମ ସ୍ୱତନ୍ତ୍ର ରାଜା ୟୁସୁଫ ଆଦିଲ ଖାଁ; ତାଙ୍କ ନାମାନୁସାରେ ବିଜାପୁରର ରାଜବଂଶକୁ ଆଦିଲସାହି ବଂଶ କହନ୍ତି । ଆଦିଲ ଖାଁ ପ୍ରଥମେ ବାହାମନ ସୁଲତାନଙ୍କର ପ୍ରତିନିଧି ହୋଇ ରାଜକାର୍ଯ୍ୟ ବୁଝୁଥିଲେ । ୧୪୯୮ ରେ ସେ ସୁଲତାନଙ୍କ ଅଧିକାର ନ ମାନି ସ୍ୱତନ୍ତ୍ର ଭାବରେ ରାଜତ୍ୱ କରିବାକୁ ଲାଗିଲେ ।

ଖ୍ୱାଜା ମହମ୍ମଦ ଗାବାନ ବାହାମନ ରାଜ୍ୟର ଜଣେ ପ୍ରଧାନ ମନ୍ତ୍ରୀ । ସେ ଆଦିଲ ଖାଁଙ୍କୁ ବାଲ୍ୟବୟସରେ କ୍ରୀତଦାସରୂପେ କ୍ରୟ କରିଥିଲେ । ବାଳକଟିର ତୀକ୍ଷ୍ଣ ବୁଦ୍ଧି ଓ ବିଚକ୍ଷଣତାରେ ପ୍ରୀତ ହୋଇ ମନ୍ତ୍ରୀ ଗାବାନ୍ ଆଦିଲଙ୍କୁ ବାହାମନ ରାଜ୍ୟର ଜଣେ କର୍ମଚାରୀରୂପେ ନିଯୁକ୍ତ କଲେ । ସେ କ୍ରମେ ଉଚ୍ଚ ପଦବୀ ଲାଭ କରି ଶେଷରେ ବିଜାପୁରର ରାଜପ୍ରତିନିଧି ହୋଇଗଲେ ।

୧୪୯୮ ରେ ୟୁସୁଫ ଆଦିଲସାହା ସୁଲତାନ ହେଲା ପରେ ହିନ୍ଦୁ ରାଜ୍ୟ ବିଜୟନଗର ଓ ଅନ୍ୟାନ୍ୟ ମୁସଲମାନରାଜ୍ୟ ସହିତ ଯୁଦ୍ଧକଲେ ।

ସିୟା ଧର୍ମ ପ୍ରତି ୟୁସୁଫଙ୍କର ଅଧିକ ଅନୁରାଗ ଥିଲା, ତେଣୁ ସେ ଉକ୍ତ ଧର୍ମ ଅବଲମ୍ବନ କରି ୧୫୦୨ ରେ ତାହା ତାଙ୍କ ରାଜ୍ୟର ଧର୍ମ ବୋଲି ଘୋଷଣା କଲେ । ଏହି ଘୋଷଣାଦ୍ୱାରା ବିଜାପୁରବାସୀ ଓ ପ୍ରତିବେଶୀ ସୁନ୍ନି ମତାବଲମ୍ବୀ ମୁସଲମାନ ରାଜାଗଣ ବିଚଳିତ ହେଲେ ।

ୟୁସୁଫ ଆଦିଲସାହା ସେହି ସମୟର ରାଜାମାନଙ୍କ ଅପେକ୍ଷା ଅନେକ ଗୁଣରେ ଅଧିକ । ସେ ଚତୁର ଓ ବୁଦ୍ଧିମାନ୍, ଦେଖିବାକୁ ସେ ଜଣେ ସୁନ୍ଦର ପୁରୁଷ, କଥାବାର୍ତ୍ତା ଭଲ କରି ପାରନ୍ତି । ସେ ମନୁଷ୍ୟମାନଙ୍କର ସ୍ୱଭାବ ଠିକ୍ ଜାଣୁ ଥିଲେ । ସେ ଅନେକ ଶାସ୍ତ୍ର ପଢ଼ି ଥିଲେ । ସଙ୍ଗୀତ ବିଦ୍ୟାରେ ତାଙ୍କର ଯଥେଷ୍ଟ ପାରଦର୍ଶିତା ଥିଲା । ତାଙ୍କ ଦରବାରରେ ଅନେକ ମୁସଲମାନ ପଣ୍ଡିତ ଥିଲେ । ସେମାନେ ତୁର୍କି, ପର୍ଶିୟା ଦେଶରୁ ଆସି ଏଠାରେ ରାଜାଙ୍କଠାରୁ ଯଥେଷ୍ଟ ବେତନ ପାଇ ସୁଖରେ ଥିଲେ । ଆଦିଲ୍ ବିଦେଶରୁ କାରିଗର ଓ ଶିଳ୍ପିମାନଙ୍କୁ ଅଣାଇ ବିଜାପୁରରେ ଅନେକ ମସ୍‌ଜିଦ୍ ଓ ଅଟ୍ଟାଳିକା ନିର୍ମାଣ କରାଇ ନଗରର ଶୋଭା ବଢ଼ାଇ ଥିଲେ ।

ଆଦିଲ୍ ରାଜକାର୍ଯ୍ୟରେ କେବେ ଅବହେଳା କରୁ ନ ଥିଲେ, ପ୍ରଜାମାନଙ୍କୁ ନ୍ୟାୟ ଭାବରେ ପାଳନ କରୁଥିଲେ ଓ ମନ୍ତ୍ରିମାନଙ୍କୁ ସୁଚାରୁରୂପେ ଶାସନ କରିବାକୁ ସତର୍କ କରାଉ ଥିଲେ । ସେ ମୁସଲମାନ ହେଲେ ସୁଦ୍ଧା, ତାଙ୍କ ରାଜତ୍ୱରେ ହିନ୍ଦୁମାନେ ବେଶ୍ ସୁଖରେ ଥିଲେ । ସେ ଅନେକ ହିନ୍ଦୁ ବ୍ୟକ୍ତିଙ୍କୁ ଉଚ୍ଚ କର୍ମଚାରୀରୂପେ ନିଯୁକ୍ତ କରି ଥିଲେ । ସେ ମହାରାଷ୍ଟ୍ର ରାଜାଙ୍କ ଭଉଣୀଙ୍କୁ ବିବାହ କରିଥିଲେ । ସେହି ହିନ୍ଦୁରମଣୀର ପୁତ୍ର, ସୁଲତାନଙ୍କ ମୃତ୍ୟୁ ପରେ ବିଜାପୁରର ସୁଲତାନ ହୋଇଥିଲେ । ରାଜ୍ୟରେ ମରହଟ୍ଟା ଭାଷା ବ୍ୟବହୃତ ହେଉଥିଲା ।

ଆଦିଲ୍‌ସାହା ଅନେକ ସମୟରେ ଗୋଆରେ ରହୁଥାନ୍ତି । ମକ୍କା ସହରକୁ ଯିବାକୁ ହେଲେ ମୁସଲମାନମାନେ ଏଠାରେ ଜାହାଜ ଚଢ଼ନ୍ତି । ୟୁସୁଫ ଅଦିଲ୍‌ସାହା ଏହି ସ୍ଥାନକୁ ରାଜଧାନୀ କରିବାକୁ ଭାବୁଥିଲେ । ୧୫୧୦ ରେ ପୋର୍ତ୍ତୁଗିଜମାନେ ଆସି ଏହା ଆକ୍ରମଣ କରିବାରୁ ୟୁସୁଫ ସେମାନଙ୍କ ସହିତ ଯୁଦ୍ଧ କଲେ । ପୋର୍ତ୍ତୁଗିଜ୍‌ମାନେ ଯୁଦ୍ଧରେ ଜୟ କରିବାରୁ ଗୋଆ ସେହି ଦିନଠାରୁ ସେମାନଙ୍କ ଅଧୀନରେ ରହିଲା ।

ୟୁସୁଫ ଆଦିଲସାହା ଓ ତାଙ୍କର ବଂଶଧରମାନେ ଅନେକ ଧନ ବ୍ୟୟ କରି କେତେଗୁଡ଼ିଏ ମସ୍‌ଜିଦ୍ ଓ ପ୍ରଶସ୍ତ ଅଟ୍ଟାଳିକା ତୋଳାଇ ଥିଲେ । ସେ ନଗରବାସିଙ୍କୁ ଜଳ ଯୋଗାଇବା ପାଇଁ କଣ୍ଠା ପଥରର ନାଳ କରାଇ ଥିଲେ । ବିଜାପୁରରେ ସୁଲତାନଙ୍କ ବ୍ୟୟରେ ଗୋଟିଏ ପୁସ୍ତକାଗାର ସ୍ଥାପିତ ହୋଇଥିଲା ।

—:୦:—

## କୃଷ୍ଣଦେବ ରାୟ

ବିଜୟନଗରର ରାଜା ଦ୍ୱିତୀୟ ଦେବରାୟ ୧୪୪୮ ସାଲ ପର୍ଯ୍ୟନ୍ତ ରାଜତ୍ୱ କରି ପ୍ରାଣତ୍ୟାଗ କଲେ । ୧୪୪୮ ଠାରୁ ୧୪୮୬ ପର୍ଯ୍ୟନ୍ତ ଉକ୍ତ ରାଜ୍ୟ ଦୁର୍ବଳ ରାଜାମାନଙ୍କଦ୍ୱାରା ଶାସିତ ହେଲା । ବିଜୟନଗର ରାଜାଙ୍କର ପ୍ରତିନିଧି ନରସିଂହ ସାଲୁବା, ଚନ୍ଦ୍ରଗିରି ପ୍ରଦେଶ ଶାସନ କରୁଥିଲେ । ସେ ରାଜାଙ୍କର ଦୁର୍ବଳତା ଓ ରାଜ୍ୟର ପତନ ଅବସ୍ଥା ଅନୁମାନ କରି ରାଜାଙ୍କୁ ତଡ଼ିଦେଇ ତାଙ୍କ ସ୍ଥାନ ଅଧିକାର କଲେ । ସେ ରାଜା ହେଲା ପରେ ତାମିଲ ଦେଶ ସହିତ ଯୁଦ୍ଧ କରି ବିଜୟନଗରର ଦକ୍ଷିଣ ସୀମା କେତେଦୂର ବଢ଼ାଇଲେ । ତାଙ୍କ ରାଜତ୍ୱରେ

ବିଜୟନଗର ପୁନର୍ବାର ତାହାର ପୂର୍ବ ଶ୍ରୀ ଓ ଗୌରବ ଲାଭ କଲା । ନରସିଂହ ସାଲୁବାଙ୍କ ମୃତ୍ୟୁରୁ ତାଙ୍କ ପୁତ୍ର ଇମ୍ମାଦ ନରସିଂହ ରାଜା ହେଲେ । ବିଜୟନଗର ସେନାପତି ନାରସାନାୟକ ୧୫୦୫ ରେ ରାଜାଙ୍କୁ ହତ୍ୟା କରି ସିଂହାସନ ଅଧିକାର କଲେ । ନାରସାନାୟକ ତୁଲୁବା ବଂଶରୁ ଜାତ ହୋଇଥିଲେ ।

କୃଷ୍ଣଦେବରାୟ ତୁଲୁବା ବଂଶର ବିଖ୍ୟାତ ରାଜା । ସେ ୧୫୦୯ରେ ରାଜା ହୋଇ ୨୦ ବର୍ଷ ରାଜତ୍ୱ କଲେ । ତାଙ୍କ ରାଜତ୍ୱରେ ବିଜୟନଗରର ସର୍ବାଙ୍ଗୀନ ଉନ୍ନତି ସାଧିତ ହୋଇ ଥିଲା । ସେ ରାଜ୍ୟର ବିଦ୍ରୋହୀ ସାମନ୍ତ ରାଜାମାନଙ୍କୁ ପରାସ୍ତ କରି ନିଜର ଅଧୀନ ଲୋକଙ୍କୁ ସେହି କାର୍ଯ୍ୟରେ ନିଯୁକ୍ତ କଲେ । ପରେ ସେ ବିପୁଳ ସୈନ୍ୟ ସହିତ ଉତ୍ତର ଅଞ୍ଚଳେ ଯୁଦ୍ଧ କରିବାକୁ ବାହାରିଲେ ।

ସେତେବେଳେ କଳିଙ୍ଗ ଦେଶରେ ଗଜପତି ବଂଶ ରାଜତ୍ୱ କରୁଥାନ୍ତି । ଗଜପତିମାନେ ମୁସଲମାନ ସୁଲତାନମାନଙ୍କୁ ସାହାଯ୍ୟ କରି ବିଜୟନଗରର ବିପକ୍ଷ ହୋଇ ଥିଲେ । ସେହି ହେତୁରୁ କୃଷ୍ଣଦେବ କଳିଙ୍ଗ ରାଜାଙ୍କ ବିରୁଦ୍ଧରେ ତାଙ୍କର ଅଗଣିତ ସେନା ଚଳାଇଲେ । ନେଲୋର ଜିଲ୍ଲାରେ ଥିବା ଉଦୟଗିରି ଦୁର୍ଗ କଳିଙ୍ଗରାଜାଙ୍କ ଅଧୀନରେ ଥିଲା । ୧୫୧୫ ସାଲରେ ଉକ୍ତ ଦୁର୍ଗ ଆକ୍ରମଣ କରି ସେମାନେ କଳିଙ୍ଗ-ଦେଶରେ ପ୍ରବେଶ କଲେ । କୃଷ୍ଣଦେବଙ୍କ ସହିତ ଯୁଦ୍ଧରେ ନ ପାରି କଳିଙ୍ଗ ଗଜପତି ତାଙ୍କ ସହ ସନ୍ଧି କଲେ । ଏହି ସନ୍ଧିଦ୍ୱାରା କୃଷ୍ଣାନଦୀର ଦକ୍ଷିଣରେ ଥିବା ପ୍ରଦେଶ ବିଜୟନଗର ରାଜାଙ୍କ ଅଧୀନ ହେଲା । ଉତ୍ତର ଭାଗଟି କଳିଙ୍ଗ ଗଜପତିଙ୍କ ଅଧୀନରେ ରହିଲା । ଉଭୟ ରାଜବଂଶ ମଧ୍ୟରେ ମିତ୍ରତା ସ୍ଥାପନ ପାଇଁ ଗଜପତିଙ୍କ କନ୍ୟା ସହିତ କୃଷ୍ଣଦେବ ରାୟଙ୍କର ବିବାହ ହେଲା ।

୧୫୨୦ ରେ କୃଷ୍ଣଦେବରାୟ ରାୟଚୁର ଦୁର୍ଗ ଆକ୍ରମଣ କଲେ । ଦୁର୍ଗଟି ବିଜାପୁର ସୁଲତାନଙ୍କ ଅଧୀନରେ ଥିଲା । କୃଷ୍ଣଦେବ ଅନେକ ସୈନ୍ୟ ଧରି ଯୁଦ୍ଧ କଲେ । ଯୁଦ୍ଧରେ ତାଙ୍କର ଜୟ ହେଲା, ରାୟଚୁର ବିଜୟନଗର ରାଜାଙ୍କ ଅଧୀନରେ ରହିଲା । ଏହା ପରେ ସେ ବିଜାପୁର ନଗର ଆକ୍ରମଣ କଲେ । ହିନ୍ଦୁ ସୈନ୍ୟ ନଗର ଭିତରେ ପଶି ଅନେକ ଘର ଭାଙ୍ଗି ପକାଇଲେ । କୃଷ୍ଣଦେବ ବାହାମନି ରାଜ୍ୟର ପ୍ରଥମ ରାଜଧାନୀ କୁଲବର୍ଗ ଆକ୍ରମଣ କରି ତାହାକୁ ଭୂମିସାତ୍ କଲେ । ସେ ଏପରି ଯୁଦ୍ଧ ପରେ ଯୁଦ୍ଧରେ ଯଶସ୍ୱୀ ହୋଇ ବିଜୟନଗର ରାଜ୍ୟର ସୀମା ବଢ଼ାଇ ଥିଲେ ।

କୃଷ୍ଣଦେବରାୟ ରାଜା ହେବା ସମୟରେ ପେଉଜ ନାମକ ଜଣେ ପୋର୍ତ୍ତୁଗିଜ୍ ବିଜୟନଗରକୁ ଆସିଥିଲେ । ସେ କୃଷ୍ଣଦେବଙ୍କ ଗୁଣରେ ମୁଗ୍ଧ ହୋଇ ପ୍ରଶଂସା କରି ଲେଖିଛନ୍ତି ।

କୃଷ୍ଣଦେବରାୟ ଜଣେ ପରାକ୍ରମୀ ଯୋଦ୍ଧା, ଧର୍ମବିଷୟରେ ତାଙ୍କର ପ୍ରଗାଢ଼ ଅନୁରାଗ । ବୈଷ୍ଣବ ଧର୍ମରେ ତାଙ୍କର ଅତିଶୟ ଆସକ୍ତି ଥିଲା । ଶତ୍ରୁ ପ୍ରତି ସେ ଉଦାରଭାବ ଦେଖାଉ ଥିଲେ । ବିଦେଶୀ ରାଜଦୂତମାନଙ୍କୁ ସେ ଆଦର ଓ ଗୌରବ କରୁଥିଲେ । ତାଙ୍କର ସୁନ୍ଦର ମୂର୍ତ୍ତି, ଭଦ୍ରୋଚିତ ବାକ୍ୟାଳାପ, ଧର୍ମ ଓ ସାହିତ୍ୟରେ ଅନୁରାଗ ଏବଂ ପ୍ରଜାବତ୍ସଳତା ଅତୁଳନୀୟ ଥିଲା । ସେ ବ୍ରାହ୍ମଣମାନଙ୍କୁ ବହୁତ ଧନ ଦାନ କରୁଥିଲେ । ତାଙ୍କ ସମୟରେ ଅନେକ ବୃହତ୍ ଦେବାଳୟ ନିର୍ମିତ ହୋଇଥିଲା ।

କୃଷ୍ଣଦେବରାୟଙ୍କ ସମୟରେ ତେଲଙ୍ଗୀୟ ସାହିତ୍ୟର ଅତିବୃଦ୍ଧି ହୋଇଥିଲା । ସେ ନିଜେ ଜଣେ ଉତ୍ତମ ପଣ୍ଡିତ ଓ ଲେଖକ, କେତେ ଖଣ୍ଡ ପୁସ୍ତକ ମଧ୍ୟ ଲେଖିଅଛନ୍ତି । ତାଙ୍କ ନିକଟରେ ବହୁ ପଣ୍ଡିତ ଓ

କବି ଥିଲେ, ସେମାନେ ରାଜାଙ୍କ ଅନୁକୂଲ୍ୟରେ ଅନେକ ପୁସ୍ତକ ଲେଖି-ଛନ୍ତି । କୃଷ୍ଣଦେବରାୟ କବି ଓ ପଣ୍ଡିତମାନଙ୍କୁ ଧନ ଦେଇ ସନ୍ତୁଷ୍ଟ କରୁଥିଲେ । ଅଲ୍ଲସାନିପେଦନା ଏହି ସମୟର ପ୍ରଧାନ କବି । ସେ "ମନୁଚରିତ" ଲେଖିଅଛନ୍ତି । ଏହି ପୁସ୍ତକଟି ତେଲଙ୍ଗୀ ଭାଷାର ଗୋଟିଏ ସମୁଜ୍ଜ୍ୱଳ ମଣି । ତିମାନ୍ନା ନାମକ ଅନ୍ୟ ଜଣେ କବି "ପାରିଜାତାପହରଣ" ଲେଖିଅଛନ୍ତି । ଧୂର୍ଜଟିଙ୍କଦ୍ୱାରା "କାଳହସ୍ତିମାହାତ୍ମ୍ୟ" ଲିଖିତ ହୋଇ-ଥିଲା ।

୧୫୨୯ ରେ ରାଜା ଗୋଟିଏ ଉତ୍କଟ ରୋଗରେ ପୀଡ଼ିତ ହୋଇ ଶେଷରେ ପ୍ରାଣତ୍ୟାଗ କଲେ ।

—:୦:—

## ବିଜୟନଗରର ରାଜ୍ୟର ପତନ

କୃଷ୍ଣଦେବରାୟଙ୍କ ମୃତ୍ୟୁ ସମୟରେ ବର୍ତ୍ତମାନ କାଳର ମାନ୍ଦ୍ରାଜ ପ୍ରଦେଶ, ମହୀଶୂର ଓ ତ୍ରିବାଙ୍କୁଡ଼ ପ୍ରଭୃତି ରାଜ୍ୟ ଏବଂ କୃଷ୍ଣାନଦୀଠାରୁ ସମଗ୍ର ଦାକ୍ଷିଣାତ୍ୟ ବିଜୟନଗରର ଅଧୀନ ଥିଲା । କିନ୍ତୁ ସେ ପ୍ରାଣତ୍ୟାଗ କରିବାର ପ୍ରାୟ ୩୬ ବର୍ଷ ପରେ ବିଜୟନଗର ମୁସଲମାନମାନଙ୍କ ଦ୍ୱାରା ଲୁଣ୍ଠିତ ହୋଇ ଛାରଖାର ହୋଇଗଲା । ସେହି ଦିନଠାରୁ ଆଜି ଯାଏଁ ବିଜୟନଗରର ପୂର୍ବ ବିଭବ ସଂପୂର୍ଣ୍ଣ ଲୁପ୍ତ । ତୁଙ୍ଗଭଦ୍ରା ତୀରସ୍ଥ ହଂପିଗ୍ରାମ ଏହି ପ୍ରାଚୀନ ଶ୍ରୀ-ସମ୍ପନ୍ନ ହିନ୍ଦୁ ରାଜଧାନୀରେ ଗୋଟିଏ ଜୀର୍ଣ୍ଣ କଙ୍କାଳରୂପେ ରହିଅଛି । କୃଷ୍ଣଦେବରାୟଙ୍କ ଭ୍ରାତା ଅଚ୍ୟୁତ ରାୟ ୧୫୨୯ରେ ବିଜୟନଗରର ରାଜା ହେଲେ । ସେ ଦୁଷ୍ଟ ଓ ପ୍ରଜାପୀଡ଼କ ଥିଲେ । ରାୟଚୁର ଓ ମୁଦ୍‌ଗଲ୍ ନାମକ ଯେଉଁ ପ୍ରଧାନ ଦୁର୍ଗ ଦୁଇଟି କୃଷ୍ଣଦେବ ଜୟ କରିଥିଲେ, ତାହା ସେ ହରାଇ ଦେଇ ବିଜୟନଗରରେ ଶତ୍ରୁର ପ୍ରବେଶ ପଥ ସୁଗମ କରିଦେଲେ ।

ଅଚ୍ୟୁତଙ୍କର ଦୁର୍ବଳ ଓ ଅସାର ରାଜତ୍ୱ ୧୫୪ ରେ ଶେଷ ହେଲା । ତାଙ୍କ ମୃତ୍ୟୁ ପରେ ତାଙ୍କ ପୁତ୍ର ସଦାଶିବ ରାୟ ରାଜା ହେଲେ ।

ବିଜୟନଗର ଓ ବାହାମନି ରାଜାମାନଙ୍କ ମଧ୍ୟରେ ସର୍ବଦା ଯୁଦ୍ଧ ହେଉଥାଏ । ୧୪୮୯ ଉତ୍ତାରୁ ବାହାମନି ରାଜ୍ୟ ବିଭିନ୍ନ ସ୍ୱତନ୍ତ୍ର ରାଜ୍ୟରେ ବିଭକ୍ତ ହେଲା; ମାତ୍ର ହିନ୍ଦୁ ମୁସଲମାନ ବିରୋଧ ବନ୍ଦ ହେଲା ନାହିଁ । ବିଜାପୁର, ଅହମ୍ମଦନଗର ପ୍ରଭୃତି ରାଜ୍ୟଗୁଡ଼ିକର ଏକତା ନ ଥିଲା, ପରସ୍ପର ମଧ୍ୟରେ ବାରମ୍ବାର ଯୁଦ୍ଧ ହେଉଥିଲା । ୧୫୫୮ ରେ ବିଜାପୁର ଓ ବିଜୟନଗର ମିଳିତ ହୋଇ ଅହମ୍ମଦନଗର ଆକ୍ରମଣ କଲେ । ଏହି ଆକ୍ରମଣବେଳେ ହିନ୍ଦୁ ସୈନ୍ୟ ଉକ୍ତ ନଗରର ବହୁତ ଅନିଷ୍ଟ କରିଥିଲେ । ମୁସଲମାନ ସୁଲତାନମାନଙ୍କର ଏବେ ଚେତା ବସିଲା । ସେମାନେ ଏକ ହୋଇ ହିନ୍ଦୁ ରାଜ୍ୟ ବିଧ୍ୱସ୍ତ କରିବାକୁ ଦୃଢ଼ସଙ୍କଳ୍ପ ହେଲେ ।

୧୫୬୪ ରେ ବିଜାପୁର, ଅହମ୍ମଦନଗର, ଗୋଲକୋଣ୍ଡା ଓ ବିଦାରର ସୁଲତାନମାନେ ମିଳିତ ହୋଇ ବିଜୟନଗର ବିପକ୍ଷରେ ସେନା ଚଳାଇଲେ । ୧୫୬୫ ଜାନୁଆରି ମାସରେ ମିଳିତ ମୁସଲମାନ ସୈନ୍ୟ ବିଜାପୁର ଅନ୍ତର୍ଗତ ତାଲିକୋଟା ନାମକ ଗୋଟିଏ ଖେଟ ନଗର ନିକଟରେ ପହଞ୍ଚିଲେ । ଏହି ସମ୍ବାଦ ବିଜୟନଗରରେ ପ୍ରବେଶ କଲେହେଁ ନଗରବାସିମାନେ ଯେ ଯାହାର କାର୍ଯ୍ୟରେ ବ୍ୟାପୃତ ରହି ଯୁଦ୍ଧ ବିଷୟ ଆଦୌ ଚିନ୍ତା କଲେ ନାହିଁ । ସଦାଶିବ ରାୟ ନିଶ୍ଚିନ୍ତ ରହିଲେ ।

ଶତ୍ରୁପକ୍ଷ ତାଲିକୋଟାଠାରୁ ଦକ୍ଷିଣ ଆଡ଼େ ଅଗ୍ରସର ହେଲେ । ହିନ୍ଦୁ ସୈନ୍ୟ ଆସି ମୁସଲମାନଙ୍କୁ ଭେଟିଲେ । ଯୁଦ୍ଧ ଆରମ୍ଭ ହେଲା ଓ ମୁସଲମାନମାନେ ଏହି ଯୁଦ୍ଧରେ ବନ୍ଧୁକ ବ୍ୟବହାର କରିଥିଲେ । ହିନ୍ଦୁମାନେ ଅଉ କିଛି ପ୍ରତିକାର କରି ପାରିଲେ ନାହିଁ । ବିଜୟନଗର ଶତ୍ରୁ ହାତରେ ପଡ଼ି ଧ୍ୱଂସପ୍ରାପ୍ତ ହେଲା ।




୧ । ଚନ୍ଦ୍ରଶେଖର ଦେବାଳୟ
୨ । ଧାଣିଦ୍ୱାର
୩ । ରାଜ ଭବନ
୪ । ସ୍ନାନ ମନ୍ଦିର
୫ । ସଭା ମଣ୍ଡପ
୬ । ହଜାରାରାମ ଦେବାଳୟ
୭ । ହାତୀଶାଳ
୮ । ଶ୍ରୀରଙ୍ଗ ଦେବାଳୟ
୯ । ପଣ୍ଡିତ ସଭାମଣ୍ଡପ
୧୦ । ନରସିଂହ ପ୍ରସ୍ତର ମୂର୍ତ୍ତି
୧୧ । ରକ୍ଷକ ଶାଳା
୧୨ । ହାତୀ ଶାଳ
୧୩ । କୋଦଣ୍ଡରାମ ଦେବାଳୟ
୧୪ । ବିଠଲ୍ ଦେବାଳୟ
୧୫ । ମାଲ୍ୟବନ୍ତ ରଘୁନାଥ ଦେବାଳୟ
୧୬ । କମ୍ପୁର ଗ୍ରାମ

ମୁସଲମାନଗଣ ଯୁଦ୍ଧକ୍ଷେତ୍ରରେ ଜୟଲାଭ କରି ନଗର ମଧ୍ୟରେ ପ୍ରବେଶ କଲେ । ସେହିଦିନଠାରୁ ୫ମାସ ଯାଏଁ ବିଜୟନଗରରେ ଶାନ୍ତି ରହିଲା ନାହିଁ । ଶତ୍ରୁଗଣ ନଗରଟି ଧ୍ୱଂସ କରିବା ଉଦ୍ଦେଶ୍ୟରେ ଆସି-ଥିଲେ, ଉଦ୍ଦେଶ୍ୟ ମଧ୍ୟ ସଫଳ ହେଲା । ସେମାନେ ନିର୍ଦ୍ଦୟ ଭାବରେ ଲୋକମାନଙ୍କୁ ହତ୍ୟା କଲେ; ପ୍ରାସାଦ ଓ ଦେବାଳୟ ସବୁ ଭଗ୍ନ କଲେ ଏବଂ ରାଜପ୍ରାସାଦର ଏତେଦୂର କ୍ଷତି କଲେ ଯେ, କେତେଗୋଟି ପ୍ରସ୍ତର-ନିର୍ମିତ ଦେବାଳୟ ଓ ପ୍ରାଚୀର ବ୍ୟତୀତ ଆଉ କିଛି ରହିଲା ନାହିଁ । ନରସିଂହଙ୍କ ପ୍ରତିମାର କେତେକ ଅଂଶ ମଧ୍ୟ ଭଗ୍ନ ହେଲା । ସେମାନେ ଅଗ୍ନି ଲଗାଇ ଆଉ କେତେକ ଅଟ୍ଟାଳିକା ଓ ଦେବାଳୟ ମଧ୍ୟ ଧ୍ୱଂସ କରି ଦେଲେ । ରାଜା ସଦାଶିବ ପ୍ରାଣରକ୍ଷା କରିବାକୁ ପେନୁଗୁଣ୍ଡା ପଳାଇ ଯାଇ ସେଠାରେ ରହିଲେ । ୧୫୭୦ ସାଲରେ ତିରୁମଲା ସଦାଶିବଙ୍କୁ ହତ୍ୟା କରି ରାଜା ହେଲେ । ତାଙ୍କର ପୁତ୍ର ବେଙ୍କଟ ୧୫୮୫ରେ ଚନ୍ଦ୍ର-ଗିରିରେ ଯାଇ ନିବାସ କଲେ । ବିଜୟନଗରର ରାଜାଙ୍କୁ ଶେଷରେ ଗୋଟିଏ କ୍ଷୁଦ୍ର ସ୍ଥାନରେ ରହିବାକୁ ହୋଇଥିଲା ।

—:୦:—

## ପର୍ତ୍ତୁଗୀଜ୍ ଓ ଡଚ୍

ଅତି ପ୍ରାଚୀନକାଳରୁ ଭାରତ ଓ ଇୟୁରୋପ ମଧ୍ୟରେ ବାଣିଜ୍ୟ ବ୍ୟବସାୟ ଚଳି ଆସୁଅଛି । ଏଠାର ବଣିକମାନେ ଇୟୁରୋପରେ ନ ମିଳିବା ପଦାର୍ଥ ପଠାଇ ଥାନ୍ତି, ପୁଣି ଏଠାରେ ନ ମିଳିବା ପଦାର୍ଥ ଇୟୁ-ରୋପରୁ ଆସିଥାଏ । ଏବେ ଆମ ଦେଶକୁ ବିଦେଶରୁ ଅନେକ ଜିନିସ ଆସୁଛି । ମଟରଗାଡ଼ି, ଲୁହା ଜିନିସ, କାଚ ଜିନିସ, ଭଲ ରକମ ଲୁଗା-ପଟା ଆମ ଦେଶରେ ପ୍ରସ୍ତୁତ ହୋଇ ନ ଥାଏ । ମାତ୍ର ଆମ୍ଭେମାନେ ଏହି

ଜିନିସଗୁଡ଼ିକ ବ୍ୟବହାର କରୁ ଥିବାରୁ, ସେ ସବୁ ବିଦେଶୀ ବଣିକ-ମାନେ ଆମ୍ଭମାନଙ୍କୁ ଯୋଗାଇ ଥାନ୍ତି । ଆମ୍ଭ ଦେଶରେ ବହୁ ପରିମାଣରେ ଆମଦାନି ବା ତିଆରି ହୁଏ, ତାହା ବିଦେଶକୁ ପଠାହୁଏ । ଆମ ଦେଶରେ ବହୁତ ଗହମ, କପା ଆଦାୟ ହୁଏ । ଏ ସବୁ ଜିନିଷ ବିଦେଶକୁ ଯାଇ ବିକ୍ରି ହୁଏ ।

ପୂର୍ବକାଳରେ ଆମ ଦେଶରୁ ବିଦେଶକୁ ଅନେକ ଅନେକ ପଦାର୍ଥ ଯାଉଥିଲା । ଇଉରୋପ ଦେଶର ଲୋକେ ବହୁ ପରିମାଣରେ କଳା-ମରିଚ, ଅଳାଇଚ, ଲବଙ୍ଗ, ତେଜପତ୍ର ଡାଲଚିନି ପ୍ରଭୃତି ମଶଲା ଦ୍ରବ୍ୟ ବ୍ୟବହାର କରୁଥିଲେ । ଏହା ସେ ଦେଶରେ ଉତ୍ପନ୍ନ ହୁଏ ନାହିଁ । ଭାରତବର୍ଷରେ ଓ ତାହାର ପୂର୍ବଭାଗରେ ଥିବା ଦ୍ୱୀପପୁଞ୍ଜରେ ଏହି ମଶଲା ଦ୍ରବ୍ୟ ବହୁ ପରିମାଣରେ ଜାତ ହୁଏ । ଏଣୁ ଏହି ଦ୍ୱୀପମାନଙ୍କୁ 'ମଶଲା ଦ୍ୱୀପ' ( Spice Islands ) କହନ୍ତି । ଇଉରୋପର ବଣିକମାନେ ଏଠାରୁ ମଶଲା କିଣି ସେମାନଙ୍କ ଦେଶକୁ ନେଇ ବିକୁଥିଲେ । ଏହି ବାଣିଜ୍ୟଦ୍ୱାରା ସେମାନଙ୍କର ବହୁ ଲାଭ ହେଉଥିଲା । ମଶଲା ଜିନିସ ଛଡ଼ା ଆଉ କେତେକ ପଦାର୍ଥ ମଧ୍ୟ ଏହି ଦେଶରେ ଆମଦାନି ହେଉଥିଲା । ସେ ସମୟରେ ବିଭିନ୍ନ କଳ ଉଦ୍ଭାବିତ ହୋଇ ନ ଥିବାରୁ, ଲୋକେ ହାତରେ ସୂତା କାଟି ଲୁଗା ବୁଣୁଥିଲେ । ସେତେବେଳେ ଭାରତରେ ଯେତେ ସରୁ ସୂତାର ଲୁଗା ପ୍ରସ୍ତୁତ ହେଉଥିଲା, ଅନ୍ୟ କେଉଁ ଦେଶରେ ସେପରି ହେଉ ନ ଥିଲା । ଏଣୁ ଏ ଦେଶର ସୁନ୍ଦର ଲୁଗା ଇଉରୋପର ଧନୀ ସ୍ତ୍ରୀମାନେ ବଡ଼ ପସନ୍ଦ କରି ବହୁତ ଧନ ଦେଇ କିଣୁଥିଲେ । ମଖମଲ୍ ପାଟ, କାଶ୍ମିରି ସାଲ୍, କମ୍ବଳ ଓ ଶତରଞ୍ଜିର କାମ ଏ ଦେଶରେ ଅତି ସୁନ୍ଦର ହେଉଥିଲା । କାରିଗରମାନେ ଅନ୍ୟାନ୍ୟ ମନୋହର ପଦାର୍ଥମାନ ତିଆରି କରୁଥିଲେ ।

ଏହି ଜିନିଷ ସବୁ ଇଉରୋପର ବଜାରମାନଙ୍କରେ ଉଚ୍ଚ ମୂଲ୍ୟରେ ବିକ୍ରି ହେଉଥିଲା । ଏହି ବାଣିଜ୍ୟଦ୍ୱାରା ଭାରତର ଓ ଇଉରୋପୀୟ ବଣିକମାନଙ୍କର ବିଶେଷ ଲାଭ ହେଉଥିଲା ।

ବାଣିଜ୍ୟ ଚଳିବାପାଇଁ ଚାରି ଗୋଟି କଥା ଆବଶ୍ୟକ । ବିକିବା ଲୋକ, କିଣିବା ଲୋକ, ପଦାର୍ଥ ଓ ଜିନିଷ ନିଆ-ଆଣ କରିବାର ଉପାୟ । ଭାରତରୁ ଇଉରୋପକୁ ଆଜିକାଲି ଜିନିଷ ପଠା ଯାଉଛି କିପରି ? ଏଠାରୁ ଏକଶତ ମହଣ କପା ଇଂଲଣ୍ଡ ଦେଶକୁ ପଠାଇବାକୁ ହେଲେ ପ୍ରଥମେ ସବୁ କପା ଗୋଟିଏ ସମୁଦ୍ର ତୀରସ୍ଥ ବନ୍ଦରକୁ ନିଆଯାଇ ସେଠାରେ ବୋଇତରେ ଚଢ଼ାଯାଏ । ବୋଇତ ଇଂଲଣ୍ଡରେ ପହଞ୍ଚିଲା ଉତ୍ତାରୁ ସେଥିରୁ ଜିନିଷ ଓହ୍ଲାଇ ଇଂଲଣ୍ଡ ଲୋକଙ୍କୁ ବିକ୍ରି କରାଯାଏ । ଆଜିକାଲି ସମୁଦ୍ରରେ ବାଷ୍ପୀୟ ଜାହାଜ ଚାଲୁଥିବାରୁ ବଡ଼ ସୁବିଧା ହୁଏ । ପୂର୍ବେ ସମୁଦ୍ର-ଯାତ୍ରା ଏତେ ସହଜ ନ ଥିଲା ଏବଂ ସମୁଦ୍ରରେ ନ ନେଲେ ଅନ୍ୟ କୌଣସି ମାର୍ଗରେ ନେବାର ଉପାୟ ନ ଥିଲା । ଏବେ ବୋଇତ ଭାରତର କୌଣସି ବନ୍ଦରରୁ ବାହାରି ସିଧା ଇଂଲଣ୍ଡରେ ଯାଇ ପହଞ୍ଚେ । ମାତ୍ର ପୂର୍ବକାଳରେ ଏ ସୁବିଧା ନ ଥିଲା । କେତେ ବାଟ ବୋଇତରେ, ଆଉ କେତେ ବାଟ ଶଗଡ଼ରେ ଜିନିଷ ପଠା ନେବାକୁ ହେଉଥିଲା ।

ପଞ୍ଚଦଶ ଶତାବ୍ଦୀ ପୂର୍ବେ ଭାରତ ଓ ଇଉରୋପ ମଧ୍ୟରେ ତିନଗୋଟି ପ୍ରଧାନ ବାଣିଜ୍ୟ-ମାର୍ଗ ଥିଲା; ପ୍ରଥମ ମାର୍ଗରେ ଯିବାକୁ ହେଲେ ବଣିକଗଣ ପଞ୍ଜାବଦେଶ ଦେଇ, ଖାଇବର ବା ବୋଲାନ୍ ଗିରିପଥ ବାଟେ ଯାଇ ଆଫଗାନିସ୍ଥାନରେ ପ୍ରବେଶ କରୁଥିଲେ । ସେଠାରୁ ( ଏସିଆ ମଧ୍ୟସ୍ଥ ) କାସ୍ପିୟାନ ସମୁଦ୍ରଟି ବୋଇତରେ ପାର ହୋଇ, କୃଷ୍ଣ ସମୁଦ୍ର ତୀରରେ ଥିବା କନ୍‌ଷ୍ଟାଣ୍ଟିନୋପଲ ସହରରେ




ପହଞ୍ଚୁଥିଲେ । ସେଠାରୁ ଇୟୁରୋପ ଦେଶର ଆରମ୍ଭ । ଏହି ବାଣିଜ୍ୟ ମାର୍ଗଟି ଅତି ପ୍ରାଚୀନକାଳରୁ ଅଛି । ଏହି ବାଟେହିଁ ଭାରତ-ଜସ୍ୟ

କରିବାକୁ ଅଲେକଜାଣ୍ଡର୍ ପ୍ରଭୃତି ବୀରମାନେ ଆସିଥିଲେ— ଆରବ ଓ ଆଫଗାନସ୍ଥାନରୁ ପଠାଣମାନେ ଆସିଥିଲେ । ଏହି ମାର୍ଗରେହିଁ ଭାରତର ବୈଦେଶିକ ବାଣିଜ୍ୟ ଚାଲୁଥିଲା ।

ଦ୍ୱିତୀୟ ବାଣିଜ୍ୟ-ପଥ:—ଆରବସାଗର ତୀରରେ ଥିବା କାଲିକଟ୍ ବନ୍ଦରଠାରୁ ବାହାରି ବାୟୁବ୍ୟ କୋଣରେ ପାରସ୍ୟ ଉପସାଗରକୁ ଯାଇ ସେଠାରୁ କୃଷ୍ଣ ସମୁଦ୍ର ପର୍ଯ୍ୟନ୍ତ ସ୍ଥଳ ମାର୍ଗରେ ଯିବାକୁ ହେଉଥିଲା । ପଥରେ ବାଗଦାଦ୍ ସହର । କେତେ ବଣିକ ବାଗଦାଦ୍ ନିକଟସ୍ଥ ବନ୍ଦରରେ ପୁନର୍ବାର ବୋଇତ ଚଢ଼ୁଥିଲେ । ଆଉ କେତେକ ଏଠାରୁ ଆସିଆମାଇନର୍ ଦେଶ ଦେଇ କୃଷ୍ଣ ସମୁଦ୍ରର କୌଣସି ବନ୍ଦରରେ ବୋଇତ ଚଢ଼ୁଥିଲେ ।

ତୃତୀୟ ମାର୍ଗଟି ଦ୍ୱିତୀୟ ମାର୍ଗର କିଛିଟା ଦକ୍ଷିଣରେ ଥିଲା । ଏହି ପଥରେ ଯିବାକୁ ହେଲେ, ବଣିକମାନେ କାଲିକଟ୍ ବନ୍ଦରରୁ ବାହାରି ଆରବ ସମୁଦ୍ର ପାରି ହେବା ପରେ ଆଫ୍ରିକା ଓ ଆରବ ମଧ୍ୟସ୍ଥ ଲୋହିତ ସାଗରରେ ପ୍ରବେଶ କରୁଥିଲେ । ଏହି ସମୁଦ୍ରରେ କେତେ ଦୂର ଯାଇ ଆଫ୍ରିକା ଦେଶର କୌଣସି ବନ୍ଦରରେ ଓହ୍ଲାଇ ନାଇଲ୍ ନଦୀର ମୁହାଣ ନିକଟରେ ଥିବା ପ୍ରସିଦ୍ଧ ଅଲେକ୍‌ଜାଣ୍ଡ୍ରିଆ ସହରରେ ପ୍ରବେଶ କରିବାକୁ ହେଉଥିଲା । ଏଠାରେ ପୁନର୍ବାର ବୋଇତ ଚଢ଼ି ବଣିକ-ମାନେ ଭୂମଧ୍ୟସାଗର ବାଟେ ଇୟୁରୋପକୁ ଯାଉଥିଲେ । ଭୂମଧ୍ୟସାଗରର ଉତ୍ତର ତୀରରେ ଭେନିସ୍ ନାମକ ଗୋଟିଏ ସହର ଅଛି । ଏହା ବର୍ତ୍ତମାନ ଇଟାଲି ଦେଶାନ୍ତର୍ଗତ । ଏଠାରେ ପୂର୍ବ-ଗୋଲାର୍ଦ୍ଧର ବଣିକମାନେ ରୁଣ୍ଡ ହେଉଥିଲେ । ଭେନିସ୍ ସହର ବାଣିଜ୍ୟ ଯୋଗେ ସେହି କାଳରେ ଇୟୁରୋପ ମଧ୍ୟରେ ଗୋଟିଏ ପ୍ରସିଦ୍ଧ ସହରରୂପେ ଗଣ୍ୟ ହେଉଥିଲା । ଭେନିସ୍‌ବାସିମାନେ ବୋଇତ ବାଣିଜ୍ୟ କରି ଅର୍ଥାତ୍ ଭଡ଼ାରେ ବୋଇତ ଯୋଗାଇ ବଣିକମାନଙ୍କଠାରୁ ବହୁ ଧନ ଆଦାୟ

କରୁଥିଲେ । ଭାରତର ମନୋହର ବସ୍ତ୍ର, ମୂଲ୍ୟବାନ୍ ମଣି ମୁକ୍ତା ଓ ସୁବାସ ମଶଲା ଦ୍ରବ୍ୟରେ ଭେନିସର ବଜାର ପୂର୍ଣ୍ଣ ହୋଇଥିଲା । ଇଉରୋପ ଖଣ୍ଡର ଲୋକେ ଏଠାକୁ ଆସି ଜିନିଷ ସବୁ କିଣି ନେଉଥିଲେ ।

ଇଉରୋପର ବଣିକମାନେ ଐ ଦେଶରୁ ସେ ଦେଶକୁ ଯା-ଆସ କରି ବାଣିଜ୍ୟ ଚଳାଉଥିଲେ । ମାତ୍ର ସପ୍ତମ ଶତାବ୍ଦୀରେ ମହମ୍ମଦଙ୍କର ଇସଲାମ୍ ଧର୍ମ ଗ୍ରହଣ କରି ଆରବବାସିମାନେ ଯେତେବେଳେ ଇଜିପ୍ଟ ଓ ପେର୍ସିଆ ଅଧିକାର କଲେ, ସେତେବେଳେ ସେମାନେ ବିଧର୍ମୀ ଇଉରୋପୀୟମାନଙ୍କ ବାଣିଜ୍ୟରେ ବାଧା ଦେଲେ । ମହମ୍ମଦୀୟମାନଙ୍କ ଦ୍ୱାରା ଇଉରୋପ ଓ ଭାରତର ବାଣିଜ୍ୟ ଚଳିଲା । ଇଉରୋପୀୟ ବଣିକ-ମାନଙ୍କ ଲାଭ ମହମ୍ମଦୀୟମାନେ ନେଲେ । ବାଣିଜ୍ୟ ପଦାର୍ଥମାନ ଆରବ-ବାସିଙ୍କ ବୋଇତରେହିଁ ନିଆ ଯାଉଥିଲା ।

ଭେନିସ୍ ନଗରର ଧନବୃଦ୍ଧି ଓ ବିଭବ ଏବଂ ଆରବବାସିଙ୍କ ବାଣିଜ୍ୟରେ ପୋର୍ତ୍ତୁଗାଲ ଦେଶବାସିଗଣ ବିଦ୍ୱେଷୀ ହେଲେ । ପୋର୍ତ୍ତୁଗାଲ ଦେଶର ରାଜା ଏହି ବାଣିଜ୍ୟ ଚଳାଇବାକୁ ମନ ବଳାଇଲେ । ମାତ୍ର ଆରବ-ଅଧିକୃତ ମାର୍ଗରେ ଯିବାକୁ ସେମାନଙ୍କର ସୁବିଧା ନ ଥିଲା । ଆରବମାନଙ୍କ ଆପତ୍ତି ବ୍ୟତୀତ, ଏହି ଭିନ୍ନଗୋଷ୍ଠି ବାଣିଜ୍ୟପଥରେ ଯିବା ପାଇଁ ମଧ୍ୟ ଅସୁବିଧା ହେଲା । ଏହି ମାର୍ଗଗୁଡ଼ିକରେ ଦସ୍ୟୁ-ଉପଦ୍ରବ ବେଶି ହେଉଥିଲା, ଏଣୁ ସେମାନେ ବହୁତ କ୍ଷତିଗ୍ରସ୍ତ ହେଲେ । ପୁଣି ଏହି ପଥରେ ଗଲେ କେତେବେଳେ ବୋଇତରେ, କେତେବେଳେ ଶଗଡ଼ରେ ଯିବାକୁ ହେଉଥିଲା; ଜିନିଷପତ୍ର ଥରକୁଥର ଓହ୍ଲାଇବାକୁ ଓ ଚଢ଼ାଇବାକୁ ପଡୁଥିଲା; ତୃତୀୟ ଅସୁବିଧା ଏହି ଯେ, ମହମ୍ମଦୀୟମାନେ ପୋର୍ତ୍ତୁଗୀଜ୍ ଏବଂ ଅନ୍ୟ କୌଣସି ଖ୍ରୀଷ୍ଟଧର୍ମାବଲମ୍ବୀ ଜାତିକୁ ଭାରତ ସହିତ ପ୍ରତ୍ୟକ୍ଷ ବାଣିଜ୍ୟ କରିବାକୁ ଦେଉ ନ ଥିଲେ । ଏ ସବୁ

କାରଣରୁ ପୋର୍ତ୍ତୁଗୀଜ୍ ରାଜା ଅନ୍ୟ ଏକ ସ୍ୱତନ୍ତ୍ର ପଥ ଆବିଷ୍କାର କରିବାପାଇଁ ବହୁ ଚେଷ୍ଟା କଲେ ।

ଆଗେ ଲୋକଙ୍କର ଦୃଢ଼ଧାରଣା ଥିଲା ଯେ, ପୃଥିବୀ ଗୋଟିଏ ପଟା ଭଳି; ମାତ୍ର ଏହି ଶତାବ୍ଦୀରେ ବୈଜ୍ଞାନିକମାନେ ପୃଥିବୀ ଗୋଲାକାର ବୋଲି ପ୍ରଚାର କଲେ । ପୃଥିବୀ ଗୋଲାକାର, ପୃଥିବୀର ଗୋଟିଏ ସ୍ଥାନରୁ ବାହାରି ସଳଖେ ଗଲେ ପୁନର୍ବାର ସେହି ସ୍ଥାନରେହିଁ ପହଞ୍ଚିବାକୁ ହୁଏ—ଏହି ନୂତନ ଧାରଣା ଇଉରୋପର ଚାରିଆଡ଼େ ବ୍ୟାପ୍ତ ହେଲା । କୋଲମ୍ବସ୍‌ନାମକ ଜଣେ ଇଟାଲୀୟ ନାବିକ ପୋର୍ତ୍ତୁଗୀଜ୍ ରାଜାଙ୍କ ସାହାଯ୍ୟରେ ଭାରତବର୍ଷକୁ ଆଟଲାଣ୍ଟିକ ସମୁଦ୍ର ବାଟେ ଆସିବାକୁ ବାହାରିଲେ । ସେ ଯାଉଁ ଯାଉଁ ପଥରେ ଗୋଟିଏ ଦ୍ୱୀପ ଦେଖି ଭାବିଲେ ଯେ, ତାହାହିଁ ଭାରତବର୍ଷ, ମାତ୍ର ପରେ ଏହା ଭୁଲ ବୋଲି ଜଣାଗଲା । ପ୍ରଥମେ ଭାରତ ବୋଲି ଭ୍ରମ ହୋଇ ଥିବାରୁ କୋଲମ୍ବସ୍ ସେହି ଆବିଷ୍କୃତ ଦ୍ୱୀପପୁଞ୍ଜର ନାମ West Indies ରଖିଲେ । ଏପରି କୋଲମ୍ବସ୍ ଭାରତକୁ ଆସିବାକୁ ବାହାରି ଆଉ ଗୋଟିଏ ନୂତନ ଦେଶ ଆବିଷ୍କାର କଲେ । ମାତ୍ର ଭାରତକୁ ନୂତନ ବାଣିଜ୍ୟ-ପଥ ଆବିଷ୍କୃତ ହେଲା ନାହିଁ । ବାର୍ଥୋଲମିଉ ଡ଼ାୟାଜ ନାମକ ଜଣେ ସାହସୀ ନାବିକ ଆଫ୍ରିକାଦେଶର ଦକ୍ଷିଣସୀମାରେ ପହଞ୍ଚି ଉକ୍ତ ଦେଶର ପୂର୍ବୋପକୂଳକୁ ଗଲେ; ମାତ୍ର ସେଠାରୁ ସେ ଭାରତକୁ ନ ଯାଇ ୧୪୮୭ରେ ପୋର୍ତ୍ତୁଗାଲକୁ ଫେରିଲେ । ୧୪୯୭ରେ ଭାସ୍କୋଡ଼ଗାମା ନାମକ ଅନ୍ୟ ଜଣେ ପୋର୍ତ୍ତୁଗୀଜ୍ ନାବିକ ତିନିଗୋଟି ବୋଇତ ଲେଇ ଡ଼ାୟାଜଙ୍କର ଆବିଷ୍କାର ପୂର୍ଣ୍ଣ କରିବାକୁ ବାହାରିଲେ । ସେ ଆଫ୍ରିକାର ପଶ୍ଚିମତୀର ବାଟେ ଯାଇ ପୂର୍ବତୀରରେ ପହଞ୍ଚିଲେ । ସେଠାରେ କେତେକଦିନ ରହି ପରେ କାଲିକଟ୍ ବନ୍ଦରରେ ଯାଇ ଓହ୍ଲାଇଲେ । କାଲିକଟ୍‌ରେ ସେତେବେଳେ ଜାମୋରିନ୍ ନାମକ ଜଣେ ହିନ୍ଦୁରାଜା ଥିଲେ । ସେ

ଗାମାଙ୍କୁ ସ୍ନେହଭାବ ଦେଖାଇଲେ, ମାତ୍ର ଆରବ ବଣିକଗଣ ତାଙ୍କୁ ବାଧା ଦେଇ ବିଶେଷ ବାଣିଜ୍ୟ କରାଇ ଦେଲେ ନାହିଁ । ଗାମା କାଲିକଟଠାରୁ କାନାନୁର ଯାଇ ସେଠାରୁ ପର୍ତ୍ତୁଗାଲକୁ ଫେରିଲେ । ଏବେ ଭାରତ ଓ ଇୟୁରୋପ ମଧ୍ୟରେ ଗୋଟିଏ ସ୍ୱତନ୍ତ୍ର ବାଣିଜ୍ୟ-ପଥ ଫିଟିଗଲା । ପୋର୍ତ୍ତୁଗାଲ ଓ ଭାରତ ମଧ୍ୟରେ ଖୁବ୍ ଭଲ ବାଣିଜ୍ୟ ଚଳିଲା ।

୧୫୦୦ ସାଲରେ ପୋର୍ତ୍ତୁଗୀଜ୍‌ମାନେ ତାଙ୍କ ରାଜାଙ୍କ ଆଦେଶମତେ କାଲିକଟଠାରେ ଗୋଟିଏ ଦୁର୍ଗ ତିଆରି କରି ସେଠାରେ ତାଙ୍କର ଜିନିସ ପତ୍ର ସୁରକ୍ଷିତ ଭାବେ ରଖି ବାଣିଜ୍ୟ କଲେ । କାନାନୁର ଓ କୋଚିନର ହିନ୍ଦୁ ରାଜାଗଣ ସେମାନଙ୍କ ବାଣିଜ୍ୟରେ କୌଣସି ଆପତ୍ତି କଲେ ନାହିଁ, ବରଂ ସାହାଯ୍ୟ କଲେ; ମାତ୍ର ମୁସଲମାନ ବା ଆରବୀ ବଣିକଗଣଙ୍କ ସହିତ ପୋର୍ତ୍ତୁଗୀଜ୍‌ମାନେ ଶତ୍ରୁ ହୋଇ ରହିଲେ । ଦୁଇ ଜାତି ମଧ୍ୟରେ ଯୁଦ୍ଧ ହେଲା, ପୋର୍ତ୍ତୁଗୀଜ୍‌ମାନେ ଯୁଦ୍ଧରେ ଜୟ କରି ଗୋଟିକ ପରେ ଗୋଟିଏ ସ୍ଥାନ ଅଧିକାର କରି କ୍ରମେ ଭାରତର ପଶ୍ଚିମ ପ୍ରାନ୍ତରେ ଗୋଟିଏ ଛୋଟ ରାଜ୍ୟ ସ୍ଥାପନ କଲେ । ଏହି ରାଜ୍ୟ ପାଳନ କରିବାକୁ ପୋର୍ତ୍ତୁଗାଲରୁ ରାଜ-ପ୍ରତିନିଧିଗଣ ଆସିଥିଲେ । ଗୋଆ, ଡାଇୟୁ ଓ ଡାମାନ ନାମକ ଆରବସାଗରତୀରସ୍ଥ ବନ୍ଦରଠାରୁ ପୋର୍ତ୍ତୁଗୀଜ୍ ବୋଇତରେ ଭାରତର ନାନାପ୍ରକାର ଜିନିସ ଯିବାକୁ ଲାଗିଲା । ପୋର୍ତ୍ତୁଗୀଜ୍ ରାଜ-ପ୍ରତିନିଧିମାନେ ଏତିକରେ ତୃପ୍ତ ନ ହୋଇ ଭାରତର ପୂର୍ବଦିଗରେ ଥିବା ମଣ୍ଡଳଦ୍ୱୀପକୁ ଯାଇ ସେଠାରେ କେତେକ ସ୍ଥାନ ଅଧିକାର କଲେ । ଏହି ଭାବରେ କେତେକବର୍ଷ ଯାଏଁ ଭାରତରେ ପୋର୍ତ୍ତୁଗୀଜ୍‌ମାନଙ୍କର ରାଜ୍ୟଟିଏ ଗଠିତ ହୋଇ ରହିଲା, ମାତ୍ର ଏହା ବହୁଦିନ ରହି ପାରିଲା ନାହିଁ ।

ଭାରତରେ ପୋର୍ତ୍ତୁଗୀଜ୍ ରାଜ୍ୟ ପତନର ଅନେକ କାରଣ ଅଛି ।

(୧) ପୋର୍ତ୍ତୁଗୀଜ୍‌ମାନଙ୍କର କ୍ରୂର ଆଚରଣ – ସେମାନେ ଦେଶବାସିମାନଙ୍କ ପ୍ରତି ଅଯଥା କ୍ରୂର ବ୍ୟବହାର କରୁଥିଲେ । କଥିତ ଅଛି ଯେ, ଅଲବୁକାର୍କ ନାମକ ଜଣେ ପୋର୍ତ୍ତୁଗୀଜ ରାଜ-ପ୍ରତିନିଧି କାଲିକଟ ଜାମୋରିନଙ୍କୁ ବିଷ-ପ୍ରୟୋଗ କରି ମାରି ଦେଇଥିଲେ ।

(୨) ପୋର୍ତ୍ତୁଗୀଜ୍ ରାଜାଙ୍କର ଖ୍ରୀଷ୍ଟଧର୍ମ; ସେ ଭାରତର ଲୋକଙ୍କୁ ତାଙ୍କ ଧର୍ମ ଗ୍ରହଣ କରିବାକୁ ବାଧ୍ୟ କଲେ । ଯେଉଁମାନେ ତାଙ୍କ ଆଦେଶ ମାନି ନ ଥିଲେ, ସେମାନଙ୍କୁ କଠିନ ଦଣ୍ଡ ଦିଆ ଯାଉଥିଲା । ସରକାରୀ କର୍ମଚାରୀଗଣ କିଛି ଭଲ କାର୍ଯ୍ୟ କରୁ ନ ଥିଲେ, ସେମାନଙ୍କ ମନ ପ୍ରକୃତି ଓ ଖରାପ ଆଚରଣ ଯୋଗୁଁ ରାଜ୍ୟଶାସନ ଉତ୍ତମ ନ ଥିଲା ।

୧୫୮୦ ସାଲ ପରେ କେତେକ ବର୍ଷ ଯାଏଁ ପୋର୍ତ୍ତୁଗାଲ ଦେଶ ସ୍ପେନ୍ ରାଜାଙ୍କ ଅଧୀନରେ ରହିଲା । ଏଣୁ ଭାରତରେ ସେମାନଙ୍କର ପ୍ରଭାବ କ୍ଷୀଣ ହୋଇଗଲା । ଶେଷରେ ତିନିଗୋଟି ସ୍ଥାନ ଛଡ଼ା, ପୋର୍ତ୍ତୁଗୀଜ୍‌ମାନଙ୍କର ସକଳ ସ୍ଥାନ ନବାଗତ ଇଂରେଜ ଓ ଡଚ୍‌ମାନଙ୍କର ଅଧୀନସ୍ଥ ହେଲା । ଗୋଆ, ଡାମନ ଓ ଡାୟୁ—ଏହି ତିନି ସହର ପୋର୍ତ୍ତୁଗାଲ ଦେଶର ଅଧିକାରରେ ବର୍ତ୍ତମାନ ସୁଦ୍ଧା ଅଛି ।

ଡଚ୍‌ମାନେ ହଲଣ୍ଡ ଦେଶବାସୀ । ଏମାନେ ସୁନିପୁଣ ନାବିକ । ୧୬ଶ ଶତାବ୍ଦୀରେ ଏମାନେ ଜାହାଜରେ ସୁଦୂର ଦେଶମାନଙ୍କୁ ଯାଇ ବାଣିଜ୍ୟ ଚଳାଇବାକୁ ଲାଗିଲେ । ମଶଲା ଦ୍ୱୀପରେ ଡଚ୍ ଓ ପୋର୍ତ୍ତୁଗୀଜ୍‌ମାନଙ୍କ ମଧ୍ୟରେ ଯୁଦ୍ଧ ଘଟିଲା । ଡଚ୍ ଜାତି ଜୟଲାଭ କରି ନିଜ ହାତକୁ ମଶଲା ବାଣିଜ୍ୟ ଆଣିଲେ । ୧୬୪୧ ସାଲରେ ମାଲାକା ଦ୍ୱୀପ ସେମାନଙ୍କ ଅଧିକାରରେ ଆସିଲା । ସିଂହଳ ଦ୍ୱୀପ ମଧ୍ୟ କେତେକ ବର୍ଷ ସେମାନଙ୍କର ଅଧୀନସ୍ଥ ହେଲା । ୧୬୬୦ ସାଲରେ ନାଗପାଟଣା ଗୋଟିଏ

ପ୍ରଧାନ ତଇ୍ ବନ୍ଦର ହେଲା । ମସଲା ବାଣିଜ୍ୟ ସମ୍ବନ୍ଧରେ ଡଚ୍ ଓ ଇଂରେଜମାନଙ୍କ ମଧ୍ୟରେ ଘୋର ଯୁଦ୍ଧ ଚଳିଲା ।

## ବାବର

ମଧ୍ୟ-ଅସିଆରେ ଗୋଟିଏ ଛୋଟ ପଠାଣ ରାଜ୍ୟ ଥିଲା । ସେଠାର ରାଜାଙ୍କ ପୁତ୍ର ବାବର । ପିତାଙ୍କ ମୃତ୍ୟୁ ପରେ ବାବର ରାଜା ହେଲେ, ସେତେବେଳେ ତାଙ୍କର ବୟସ ୧୧ ବର୍ଷ । କେତେଜଣ ଦୁଷ୍ଟ ପ୍ରଜା ବାବରଙ୍କ ବିରୁଦ୍ଧରେ ବିଦ୍ରୋହ କରି ଉଠିଲେ; କିନ୍ତୁ ବିଶ୍ୱସ୍ତ ଓ ଅନୁଗତ ସର୍ଦ୍ଦାରମାନଙ୍କ ସାହାଯ୍ୟରେ ବାବର ସେହି ବିଦ୍ରୋହ ଦମନ କରିଥିଲେ ।

ତୈମୁର ଏଥିପୂର୍ବେ ଅଫଗାନସ୍ଥାନର ସମରଖଣ୍ଡରେ ତାଙ୍କର ରାଜ୍ୟ ପ୍ରତିଷ୍ଠିତ କରିଥିଲେ । ବାବର ତୈମୁରଙ୍କର ବଂଶଧର ଥିବାରୁ, ସେ ସମରଖଣ୍ଡର ମଧ୍ୟ ଶାସକ ହେଲେ । ଏଣୁ ତାଙ୍କର ଶତ୍ରୁ ସଂଖ୍ୟା କ୍ରମେ ବଢ଼ିବାକୁ ଲାଗିଲା । ସେ ଶତ୍ରୁମାନଙ୍କୁ ହଟାଇ ନ ପାରି ରାଜ୍ୟରୁ ବିତାଡ଼ିତ ହୋଇ କେତେକ ଦିନ ବନବାସ କଲେ । କିନ୍ତୁ ପରେ ସୈନ୍ୟବଳ ପାଇ ସେ ପୁଣି ତାଙ୍କର ଦୁଇ ରାଜ୍ୟ ଅଧିକାର କରି ପକାଇଲେ । ଦୁଃଖର ବିଷୟ, ସେ ପୁନର୍ବାର ଶତ୍ରୁଗଣଙ୍କ ହାତରେ ପରାଭବ ପ୍ରାପ୍ତ ହେଲେ । କିନ୍ତୁ ସେ ତ ଥିଲେ ଖୁବ୍ ସାହସୀ—ସେନା ଯୋଗାଡ଼ କରି ଶତ୍ରୁମାନଙ୍କୁ ପୁଣି ହଟାଇଲେ । କ୍ରମେ ଶତ୍ରୁବଳ ଅତ୍ୟଧିକ ହେବାରୁ ବାବର ଶେଷରେ ନିଜ ରାଜ୍ୟରୁ ବିତାଡ଼ିତ ହେଲେ ।

ବାବର ଏହି ଶୋଚନୀୟ ଅବସ୍ଥାରେ ଦୁଃଖିତ ଓ ବିରକ୍ତ ହେଲେହେଁ ଧୈର୍ଯ୍ୟଚ୍ୟୁତ ହେଲେ ନାହିଁ । ତାଙ୍କର ରାଜ୍ୟ-ପିପାସା

ବଳବତୀ ହେଲା । ସେତେବେଳେ ଅଫଗାନିସ୍ତାନରେ କାବୁଲ ରାଜ୍ୟର ଅବସ୍ଥା ଅତ୍ୟନ୍ତ ଶୋଚନୀୟ ଥିଲା । ଏହି ସୁଯୋଗ ପାଇ ବାବର ତାଙ୍କର ବଶ୍ୱସ୍ତ ସୈନ୍ୟ ସାହାଯ୍ୟରେ ୧୫୦୪ ସାଲରେ କାବୁଲ ଆକ୍ରମଣ କରି ନିଜ ଅଧିକାରରେ ଆଣିଲେ । ପରେ ସେ ଭାରତ ଜୟ କରିବାକୁ ମନ ବଳାଇଲେ ।



ସେହି ସମୟରେ ଭାରତର ଅବସ୍ଥା ବଡ଼ ଶୋଚନୀୟ ଥିଲା । ତୋଗଲକ୍ ବଂଶ ପରେ ଅଫଗାନ୍ ରାଜ୍ୟର ପତନ ହେଲା । ଦିଲ୍ଲୀରେ କେହି ବଳବାନ୍, କ୍ଷମତାଶାଳୀ ସୁଲତାନ ନ ଥିଲେ । ଅନେକ ସ୍ୱତନ୍ତ୍ର ହିନ୍ଦୁ ଓ ମହମ୍ମଦୀୟ ରାଜ୍ୟ ଗଠିତ ହୋଇଥିଲା । ହିନ୍ଦୁସ୍ତାନରେ ବଙ୍ଗଳା, ବିହାର, ଗୁଜରାଟ, ମାଳବ, ଖାଣ୍ଡେଶ୍ ଓ ଯାନପୁର ରାଜ୍ୟମାନ ମୁସଲମାନ ସୁଲତାନମାନଙ୍କ ଅଧୀନରେ ଥିଲା । ରାଜସ୍ଥାନରେ ଅନେକ ହିନ୍ଦୁ ରାଜା ଥିଲେ—ସେମାନଙ୍କ ମଧ୍ୟରେ ମେବାଡ୍-ରାଣା ସଂଗ୍ରାମ ସିଂହ ସର୍ବପ୍ରଧାନ । ଭାରତରୁ ପଠାଣମାନଙ୍କୁ ତଡ଼ିଦେବାକୁ ରାଣାଙ୍କର ପ୍ରଗାଢ଼ ଚେଷ୍ଟା ଚାଲିଥାଏ । ଦାକ୍ଷିଣାତ୍ୟରେ ବାହାମନି ରାଜ୍ୟ ଖଣ୍ଡ ଖଣ୍ଡ ହୋଇ ଯାଇ ଥିଲା—ଅହମ୍ମଦନଗର, ବିଜାପୁର, ଗୋଲକୋଣ୍ଡା ଓ ବିଦାର ସ୍ୱତନ୍ତ୍ର ରାଜ୍ୟ ହୋଇଥିଲା । ଏହାର ଦକ୍ଷିଣରେ କୃଷ୍ଣଦେବରାୟଙ୍କର ପ୍ରସିଦ୍ଧ ହିନ୍ଦୁ ରାଜ୍ୟ ଖୁବ୍ ଉନ୍ନତ ଓ ପ୍ରତାପଶାଳୀ ଥିଲା ।

ସେତେବେଳେ ଦିଲ୍ଲୀର ସୁଲତାନ୍ ଥିଲେ ଇବ୍ରାହିମ୍ ଲୋଦୀ । ଲୋଦୀଙ୍କ ସହିତ ପଞ୍ଜାବ ସୁଲତାନଙ୍କର ଶତ୍ରୁତା ଥିଲା । ଏଣୁ ପଞ୍ଜାବ ସୁଲତାନ ବାବରଙ୍କର ସାହାଯ୍ୟ ଲୋଡ଼ିଲେ । ବାବର ଅତି ଆନନ୍ଦରେ ଏହି ପ୍ରାର୍ଥନା ରକ୍ଷା କରି ପଞ୍ଜାବକୁ ଆସିଲେ । ମାତ୍ର ପଞ୍ଜାବ ସୁଲତାନ ତାଙ୍କୁ କିଛି ସାହାଯ୍ୟ ନ କରିବାରୁ, ସେ କାବୁଲକୁ ଫେରିଗଲେ । ୧୫୨୫ ସାଲରେ ବାବର ସୈନ୍ୟ ସଂଗ୍ରହ କରି ପୁଣି ଭାରତକୁ ଆସି ପଞ୍ଜାବ ଅଧିକାର କଲେ ଏବଂ ପରେ ଦିଲ୍ଲୀ ଆକ୍ରମଣ କରିବାକୁ ଗଲେ । ପାଣିପଥଠାରେ ବାବର ଓ ଇବ୍ରାହିମ୍‌ଲୋଦୀଙ୍କ ମଧ୍ୟରେ ଯୁଦ୍ଧ ହେଲା । ବାବରଙ୍କର ୭୦୦ ବନ୍ଧୁକ ଥିଲା । ତତ୍‌ପୂର୍ବରୁ ଦେଶରେ କେହି ବନ୍ଧୁକ ଓ ବାରୁଦ ବ୍ୟବହାର କରି ନ ଥିଲେ । ବାବର ଜଣେ ନାମଜାଦା ଯୋଦ୍ଧା; ବାଲ୍ୟାବସ୍ଥାରୁହିଁ ତାଙ୍କର ଯୁଦ୍ଧରେ ଅଭ୍ୟାସ ଓ ଆସକ୍ତି ଥିଲା । ତାଙ୍କ ସୈନିକମାନେ ବନ୍ଧୁକ ବ୍ୟବହାର କରି ଚମତ୍କାର ଯୁଦ୍ଧ ଚଳାଇଲେ । ଫଳରେ ଇବ୍ରାହିମ ଲୋଦୀ ପରାସ୍ତ ଓ ନିହତ ହେଲେ । ଦିଲ୍ଲୀ ଓ ଆଗ୍ରା ବାବରଙ୍କ ଅଧୀନ ହେଲା । ଏପରି ସେ ହିନ୍ଦୁସ୍ଥାନରେ ମୋଗଲ-ସାମ୍ରାଜ୍ୟ ପ୍ରତିଷ୍ଠିତ କଲେ ।

ସେହି ସମୟରେ ରାଜପୁତ-ନେତା ବୀରଶ୍ରେଷ୍ଠ ରାଣା ସଂଗ୍ରାମସିଂହ ବାବରଙ୍କ ବିରୁଦ୍ଧରେ ଅଗ୍ରସର ହେଲେ । ଆଗ୍ରା ନଗରଠାରୁ କିଛି ଦୂରରେ ସିକ୍ରି ବୋଲି ଗୋଟିଏ ସ୍ଥାନ ଅଛି । ସେଠାରେ ବାବର ଓ ସଂଗ୍ରାମ ସିଂହଙ୍କ ମଧ୍ୟରେ ଯୁଦ୍ଧ ଘଟିଲା । ପାଣିପଥ ଭଳି ଏହି ଯୁଦ୍ଧ ବି ଭୟଙ୍କର ହୋଇଥିଲା । ସଂଗ୍ରାମସିଂହ ଯୁଦ୍ଧରେ ପରାଜିତ ହୋଇ ପଳାୟନ କଲେ ।

ପରେ ବାବର ପୂର୍ବ ଦିଗ ପ୍ରତି ଅଗ୍ରସର ହେଲେ । ସେତେବେଳେ ବଙ୍ଗ ଓ ବିହାରର ପଠାଣ ସୁଲତାନମାନେ ବାବରଙ୍କର ଶତ୍ରୁ । ୧୫୨୯

ସାଲରେ ଗୋଗ୍ରା ଓ ଗଙ୍ଗାନଦୀର ସଙ୍ଗମସ୍ଥଳରେ ବାବର ସେମାନଙ୍କୁ ସମ୍ପୂର୍ଣ୍ଣରୂପେ ପରାସ୍ତ କଲେ । ଏହି ଯୁଦ୍ଧର ଫଳରେ ବାବରଙ୍କ ସାମ୍ରାଜ୍ୟ ଅକ୍ସସ ନଦୀଠାରୁ ବଙ୍ଗ ପର୍ଯ୍ୟନ୍ତ ବିସ୍ତୃତ ହେଲା ।

ବାବର ତାଙ୍କ ପୁତ୍ର ହୁମାୟୂନଙ୍କୁ ବଡ଼ ପ୍ରେମ କରୁଥାନ୍ତି । ଥରେ ହୁମାୟୂନଙ୍କର ଭୟଙ୍କର ଜ୍ୱର ହେଲା । ବାବର ନିତାନ୍ତ ମର୍ମାହତ ହୋଇ ପୁତ୍ରଙ୍କ ରୋଗ-ଶଯ୍ୟା ନିକଟରେ ବସି ଈଶ୍ୱରଙ୍କୁ ଗୁହାରି ଜଣାଇଲେ—'ଆଲ୍ଲା ! ପୁତ୍ରର ପୀଡ଼ା ମୋତେ ଦେଇ ତାକୁ ବଞ୍ଚାଇ ଦିଅ ।' ଆଶ୍ଚର୍ଯ୍ୟର କଥା, ଈଶ୍ୱର ବାବରଙ୍କର ଗୁହାରି ଶୁଣିଲେ—ହୁମାୟୂନ୍ ସେହିକ୍ଷଣି ସୁସ୍ଥ ହେଲେ ଏବଂ ବାବର ଜ୍ୱରାକ୍ରାନ୍ତ ହୋଇ ୧୫୩୦ ସାଲରେ ପ୍ରାଣତ୍ୟାଗ କଲେ । ଜୀବିତାବସ୍ଥାରେ ସେ ଇଚ୍ଛା କରିଥିଲେ ଯେ, ମୃତ୍ୟୁ ପରେ କାବୁଲରେ ତାଙ୍କର କବର ଦିଆଯିବ । ବର୍ତ୍ତମାନ ତାଙ୍କର ସେହି ଇଚ୍ଛା କାର୍ଯ୍ୟରେ ପରିଣତ କରାଗଲା । ସ୍ମୃତି-ଚିହ୍ନସ୍ୱରୂପ ସେଠାରେ ଅଳ୍ପ ପୁରୁଣା ଗୋଟିଏ ସୁନ୍ଦର ମର୍ମର ପ୍ରସ୍ତର ନିର୍ମିତ ମସ୍‌ଜିଦ୍ ଅଛି ।

ବାବରଙ୍କ ଚରିତ୍ର ଅତି ଉତ୍ତମ ଥିଲା । ସେ ଜଣେ ପ୍ରସିଦ୍ଧ ଯୋଦ୍ଧା । ଶାରୀରିକ ବଳ, ଧୈର୍ଯ୍ୟ ଓ ଉତ୍ସାହ ଯୋଗେ ସେ ଜୀବନର ସକଳ ବିପଦ ଓ ଦୁର୍ଘଟନା ଅତିକ୍ରମ କରି ପାରି ଥିଲେ ଏବଂ ଶେଷରେ ଯଶସ୍ୱୀ ହୋଇଥିଲେ । ସାହିତ୍ୟରେ ତାଙ୍କର ଗଭୀର ଜ୍ଞାନ ଥିଲା । ସେ ତୁର୍କି ଓ ପାରସ୍ୟ ଭାଷା ଭଲ ଜାଣିଥିଲେ । ତୁର୍କି ଭାଷାରେ ସେ ନିଜର ଜୀବନୀ ଲେଖି ଯାଇଛନ୍ତି । ଏହା ପାଠ କଲେ, ବାବରଙ୍କ ଜୀବନର ଘଟନାବଳୀ ଏବଂ ତାଙ୍କର ଅପୂର୍ବ ସାହିତ୍ୟାନୁରାଗ ସ୍ପଷ୍ଟ ବୁଝାଯାଏ ।

ମଧ୍ୟ-ଏସିଆରେ ବାସସ୍ଥାନ ଓ ଖାଦ୍ୟର ଅଭାବ ହେବାରୁ, ଆର୍ଯ୍ୟ-ଜାତି ସେଠାରୁ ଦଳେ ଦଳେ ଆସି ଭାରତ ଆକ୍ରମଣ କରିଥିଲେ ଏବଂ

କ୍ରମେ ନିଜ ବୁଦ୍ଧି ଓ ସାହସ ବଳରେ ଅନାର୍ଯ୍ୟମାନଙ୍କୁ ମାରି ତଡ଼ି ଆର୍ଯ୍ୟାବର୍ତ୍ତରେ ଚିର ଆଧିପତ୍ୟ ଚଳାଇଲେ । କିନ୍ତୁ ପଠାଣମାନେ ଭାରତ ଆକ୍ରମଣ କରିଥିଲେ, ଏହି ଦେଶର ହିନ୍ଦୁଙ୍କୁ ହତ୍ୟା କରି, ଦେବମନ୍ଦିର ସବୁ ଚୂର୍ଣ୍ଣ ବିଚୂର୍ଣ୍ଣ କରି, ଇସ୍‌ଲାମ ଧର୍ମର ପ୍ରଚାର କରି ଧନରତ୍ନାଦି ଲୁଟପାଟ କରି ନେବା ପାଇଁ । ଅବଶ୍ୟ ଏଠାରେ ରାଜ୍ୟ-ବିସ୍ତାର କରିବାର ବଳବତୀ ଇଚ୍ଛା ଓ ଚେଷ୍ଟା କେତେଜଣଙ୍କର ଥିଲା । ଆର୍ଯ୍ୟମାନଙ୍କ ଭଳି ମୁସଲମାନଗଣ ମଧ୍ୟ ଏହି ଦେଶକୁ ଆସି ଆଗେ ପଞ୍ଜାବ ପ୍ରଦେଶ ମାଡ଼ି ବସିଥିଲେ—ସେହି ପ୍ରଦେଶ ବାଟେହିଁ ଉତ୍ତରସ୍ଥେ ଏହି ଦେଶରେ ପ୍ରବେଶ କରିଥିଲେ । ଶସ୍ୟ-ଶ୍ୟାମଳା ଭାରତର ପ୍ରଚୁର ଧନରତ୍ନ, ପ୍ରୀତିପ୍ରଦ ଜଳବାୟୁ ଆର୍ଯ୍ୟ ଓ ପଠାଣମାନଙ୍କୁ ଆକୃଷ୍ଟ କରି ଆଣି ଥିଲା । ଆର୍ଯ୍ୟ ଜାତି ଯେପରି ହିନ୍ଦୁସ୍ଥାନରେ ସେମାନଙ୍କ ସାମ୍ରାଜ୍ୟ ବିସ୍ତାର କରିଥିଲେ, ପଠାଣମାନେ ମଧ୍ୟ ସେହିପରି ସେଠାରେ ସେମାନଙ୍କ ରାଜ୍ୟ ଗଢ଼ି ଥିଲେ ।

---

## ହୁମାୟୁନ

ବାବରଙ୍କର ଚାରି ପୁତ୍ର ମଧ୍ୟରେ ହୁମାୟୁନ ଜ୍ୟେଷ୍ଠ । ପିତାଙ୍କ ମୃତ୍ୟୁ ପରେ ସେ ଦିଲ୍ଲୀର ସମ୍ରାଟ ହେଲେ । କିନ୍ତୁ ବାବରଙ୍କର ପୂର୍ବ ରାଜ୍ୟ ଅର୍ଥାତ୍ ପଞ୍ଜାବ, କାନ୍ଦାହାର ଓ କାବୁଲ ତାଙ୍କର ଆଉ ଜଣେ ପୁତ୍ରଙ୍କ ଅଧୀନରେ ରହିଲା । ସମ୍ରାଟ ହେବା ପରେ ହୁମାୟୁନ ଯୁଦ୍ଧରେ ଗୁଜରାଟ ରାଜାଙ୍କୁ ପରାସ୍ତ କଲେ । କିନ୍ତୁ ଗୁଜରାଟ ପ୍ରଦେଶକୁ ସଂପୂର୍ଣ୍ଣ ଭାବରେ ନିଜ ଅଧୀନରେ ନ ଆଣିବା ପୂର୍ବରୁ ସେ ବିହାର ଯିବାକୁ ବାଧ୍ୟ ହେଲେ । କାରଣ, ବିହାରର ନବାବ ସେରସାହା ତାଙ୍କ ବିରୁଦ୍ଧରେ ବାହାରିଲେ ।

ସେତେବେଳେ ଚୁନାର ଓ ରୋଟାସ ନାମକ ଦୁଇଟି ଦୁର୍ଗ ସେରସାହାଙ୍କ ଅଧିକାରରେ ଥିଲା । ହୁମାୟୁନ ଚୁନାର ଆକ୍ରମଣ କରି ତାହା ନିଜ ଶାସନାଧୀନରେ ରଖିଲେ । ପରେ ସେ ବଙ୍ଗ ପ୍ରଦେଶ ଆଡ଼େ ଅଗ୍ରସର ହେଲେ । ସେରସାହା ଦିଲ୍ଲୀସମ୍ରାଟ ନାମ ଧାରଣ କରି ହୁମାୟୁନଙ୍କ ସଙ୍ଗେ ଲଢ଼ାଇ କଲେ । ୧୫୩୯ ସାଲରେ ଚୌସା ନାମକ ସ୍ଥାନରେ ହୁମାୟୁନ ପୂର୍ଣ୍ଣ ପରାଭବ ପାଇଲେ । କିନ୍ତୁ ସେ ହତାଶ ନ ହୋଇ କନୌଜଠାରେ ସେରସାହାଙ୍କ ସହିତ ପୁନର୍ବାର ଯୁଦ୍ଧ କଲେ । ଏଠାରେ ବି ସେରସାହାଙ୍କର ଜୟ ହେଲା ।

ଏହି ବିପଦରେ ସୁଦ୍ଧା ହୁମାୟୁନଙ୍କ ଭାଇମାନେ ତାଙ୍କୁ ସାହାଯ୍ୟ ନ କରି ଚୁପ ରହିଲେ । ଏଣୁ ନିରାଶ୍ରୟ ହୁମାୟୁନ ପ୍ରତ୍ୟେକ ଯୁଦ୍ଧରେ ପରାସ୍ତ ହୋଇ ଶେଷରେ ଦିଲ୍ଲୀ ତ୍ୟାଗ କରିବାକୁ ବାଧ୍ୟ ହେଲେ । ସେ ଦିଲ୍ଲୀ ଓ ଆଗ୍ରା ସେରସାହାଙ୍କ ହାତରେ ଦେଇ ରାଜସ୍ଥାନକୁ ଗଲେ । ତାଙ୍କର ଆଶା ଅନୁସାରେ ରାଜପୁତମାନେ ତାଙ୍କୁ କୌଣସି ସାହାଯ୍ୟ ଦେଲେ ନାହିଁ । ହୁମାୟୁନ ନିରାଶ ହୋଇ କେତେଜଣ ଅନୁଚର ଓ ଗର୍ଭବତୀ ପତ୍ନୀଙ୍କୁ ସଙ୍ଗେ ଧରି ରାଜପୁତାନାର ମରୁଭୂମିରେ ବୁଲିବାକୁ ଲାଗିଲେ । ସେଠାରେ ସେମାନଙ୍କ କଷ୍ଟର ଆଉ ପରିସୀମା ରହିଲା ନାହିଁ । ଶେଷରେ ସେ ସିନ୍ଧୁ ପ୍ରଦେଶର ଅମରକୋଟ ନାମକ ସ୍ଥାନରେ ଯାଇ ପହଞ୍ଚିଲେ । ଏହି ସ୍ଥାନରେ ହିଁ ତାଙ୍କ ପୁତ୍ର ଆକବର ଜନ୍ମଲାଭ କଲେ ।

ପୁଅ କପାଳ ବିଷୟ, ଏହି ଚିନ୍ତା ଏକା ହୁମାୟୁନଙ୍କୁ ବ୍ୟତିବ୍ୟସ୍ତ କରି ପକାଇଲା । ସେ ନିରୁପାୟ ହୋଇ ପତ୍ନୀ ଓ ଶିଶୁପୁତ୍ରକୁ ସେଠାରେ ଛାଡ଼ି ଦେଇ ପାରସ୍ୟ ରାଜାଙ୍କର ଆଶ୍ରୟ ଗ୍ରହଣ କଲେ । ହୁମାୟୁନଙ୍କ ଭାଇ ଶିଶୁ ଆକବରଙ୍କୁ କାବୁଲରେ ନେଇ ରଖିଲେ ଏବଂ ତାଙ୍କୁ ହତ୍ୟା

କରିବାପାଇଁ ଚେଷ୍ଟା କଲେ । କିନ୍ତୁ ତାଙ୍କର ସେହି କଷ୍ଟର ଚେଷ୍ଟା ବିଫଳ ହେଲା ।

ପାରସ୍ୟ ରାଜା ଷିଆ-ଶାଖାବଲମ୍ବୀ ମୁସଲମାନ । ତାଙ୍କୁ ପ୍ରୀତ କରିବା ଉଦ୍ଦେଶ୍ୟରେ ହୁମାୟୁନ ନିଜର ସୁନ୍ନି ମତ ତ୍ୟାଗ କରି ଷିଆ-ଦୀକ୍ଷା ଗ୍ରହଣ କଲେ ଏବଂ ରାଜ୍ୟଜୟ କରିବା ପରେ ପାରସ୍ୟ ରାଜାଙ୍କୁ କାନ୍ଦାହାର ଛାଡ଼ି ଦେବାକୁ ପ୍ରତିଶ୍ରୁତ ହେଲେ । ପାରସ୍ୟ ରାଜା ସନ୍ତୁଷ୍ଟ ହୋଇ ତାଙ୍କୁ ସେନା ସାହାଯ୍ୟ କଲେ । ଏହି ସେନା ସାହାଯ୍ୟରେ ହୁମାୟୁନ ତାଙ୍କ ଭାଇ କାବୁଲ ରାଜାଙ୍କ ସଙ୍ଗେ ଯୁଦ୍ଧ କରି ଜିଣିଲେ । ସେ ଭାଇଙ୍କୁ ତଡ଼ିଦେଇ କାବୁଲ ଓ କାନ୍ଦାହାରର ଶାସକ ହେଲେ ଏବଂ ଅକବରଙ୍କୁ ଉଦ୍ଧାର କଲେ ।

ହୁମାୟୁନ ୧୫୫୫ ସାଲରେ ସେରସାହାଙ୍କ ପୁତ୍ରଙ୍କୁ ଯୁଦ୍ଧରେ ପରାସ୍ତ କରି ପୁନର୍ବାର ଦିଲ୍ଲୀ ଓ ଅଗ୍ରା ଅଧିକାର କରି ନେଲେ । ସେ ୧୫୫୬ରେ ପ୍ରାଣତ୍ୟାଗ କଲେ ।



# ଅକବର

୧୩ ବର୍ଷ ବୟସରେ ଅକବର ଦିଲ୍ଲୀ-ସିଂହାସନ ଆରୋହଣ କଲେ । ତାଙ୍କର ଶୈଶବାବସ୍ଥାରେ ସେନାପତି ବୈରାମ ଖାଁ ତାଙ୍କ ପାଇଁ ସାମ୍ରାଜ୍ୟ ବୁଝିଲେ । ହୁମାୟୁନଙ୍କ ମରଣ ସଙ୍ଗେ ସଙ୍ଗେ ସେରସାହାଙ୍କ ପୁତ୍ରମାନେ ଦିଲ୍ଲୀ କରଗତ କରିବାକୁ ଚେଷ୍ଟିତ ହେଲେ । ସେମାନଙ୍କ ମଧ୍ୟରୁ ଜଣେ ବିହାରରେ ବିଦ୍ରୋହ ଆରମ୍ଭ କଲା, ଆଉ ଜଣେ ପଞ୍ଜାବରେ ରହି ଅକବରଙ୍କର ବିରୁଦ୍ଧାଚରଣ କଲା ।

ହେମୁ ବିପକ୍ଷଦଳର ଜଣେ ପ୍ରଧାନ ସେନାପତି । ପାନିପଥ କ୍ଷେତ୍ରରେ ହେମୁ ଓ ବୈରାମ ଖାଁଙ୍କ ମଧ୍ୟରେ ଭୁମୁଳ ଯୁଦ୍ଧ ଘଟିଲା । ହେମୁ ଯୁଦ୍ଧରେ ଆହତ ହୋଇ ବନ୍ଦୀ ହେଲେ । ବୈରାମ ଖାଁଙ୍କ ପରାମର୍ଶ ଅନୁସାରେ ଆକବର ବନ୍ଦୀ ହେମୁଙ୍କୁ ହତ୍ୟା କରିଦେଲେ ।

୧୫୫୮ ଠାରୁ ୧୫୬୦ ପର୍ଯ୍ୟନ୍ତ ବାଳକ ଅକବର ଓ ବୈରାମ ଖାଁ ବହୁ ରାଜ୍ୟ ସହିତ ଯୁଦ୍ଧ ଚଲାଇଲେ । ଗୁଆଲିଅର ଦୁର୍ଗ ମୋଗଲ ସାମ୍ରାଜ୍ୟରେ ସାମିଲ ହେଲା । ରାଜପୁତାନାର ଅଜମିର ଏବଂ ଆଗ୍ରାର ପୂର୍ବ ଦିଗରେ ଥିବା ଜାନପୁର ରାଜ୍ୟ ମଧ୍ୟ ମୋଗଲ ସମ୍ରାଟଙ୍କ ହାତକୁ ଆସିଲା । ଏ ସମସ୍ତ ଅଧିକାର ଓ ବିଜୟର କାରଣ ବୈରାମ ଖାଁଙ୍କ ପରିଶ୍ରମ ।

ଅଳ୍ପ କେତେକ ଦିନ ପରେ ଗୋଟିଏ ଅପ୍ରୀତିକର ଘଟନା ହେଲା । ଅକବରଙ୍କ ମା ଓ ପ୍ରଧାନ ଧାଇ ବୈରାମ ଖାଁଙ୍କ କ୍ଷମତା ଓ ପ୍ରଭାବରେ ଈର୍ଷ୍ୟାନ୍ୱିତ ହୋଇ ତାଙ୍କ ବିରୁଦ୍ଧରେ ଯୁବକ ଅକବରଙ୍କୁ ପ୍ରବର୍ତ୍ତାଇଲେ । ଅକବର ୧୮ ବର୍ଷ ବୟସରେ ସାମ୍ରାଜ୍ୟର ସମସ୍ତ ଭାର ନିଜ ହାତକୁ ନେଲେ ଏବଂ ବୈରାମ ଖାଁଙ୍କୁ କାର୍ଯ୍ୟରୁ ଅନ୍ତର କରି ଦେଲେ । ବୈରାମ ଖାଁ କ୍ଷୁବ୍ଧ ହୋଇ ପଞ୍ଜାବକୁ ଚାଲିଗଲେ, ସେଠାରେ ଜଣେ ଶତ୍ରୁ ଦ୍ୱାରା ନିହତ ହେଲେ ।

ଅକବର ବହୁ ଯୁଦ୍ଧରେ ଜୟଲାଭ କରି ଭାରତରେ ବିଶାଳ ମୋଗଲ ସାମ୍ରାଜ୍ୟ ପ୍ରତିଷ୍ଠିତ କଲେ । ସେ ୧୬୦୫ ସାଲରେ ପ୍ରାଣତ୍ୟାଗ କଲେ । ସେତେବେଳକୁ ତାଙ୍କର ସାମ୍ରାଜ୍ୟ କାବୁଲଠାରୁ ଆସାମ ପର୍ଯ୍ୟନ୍ତ ଏବଂ ହିମାଳୟଠାରୁ ଅହମ୍ମଦ ନଗର ପର୍ଯ୍ୟନ୍ତ ବିସ୍ତୃତ ଥିଲା ।

ଆକବର ନିଜ ହାତକୁ ମୋଗଲ ସାମ୍ରାଜ୍ୟ ନେଲାବେଳେ, ହିନ୍ଦୁ-ନଗର, ଗୁଜରାଟ ଓ ମାଲବ ପ୍ରଦେଶମାନ ସ୍ୱତନ୍ତ୍ର ଥିଲା । ଓଡ଼ିଶାର ସେତେବେଳେ ରାଜା ଥିଲେ ମୁକୁନ୍ଦଦେବ । ବଙ୍ଗଳା ଓ ବିହାର ସୁଲେମାନଙ୍କ ଅଧୀନରେ ଥିଲା । ଦାକ୍ଷିଣାତ୍ୟର ପଶ୍ଚିମ ଉପକୂଳରେ ପୋର୍ତ୍ତୁଗୀଜ୍‌ମାନେ ସେମାନଙ୍କର ନୂତନ ରାଜ୍ୟ ସ୍ଥାପନ କରିଥିଲେ ।

ଅକବର ମାଲବ ଜିଣିବା ପରେ, ଗୋଣ୍ଡୱାନା ପ୍ରଦେଶର ପ୍ରସିଦ୍ଧ ରାଣୀ ବୀରାଙ୍ଗନା ଦୁର୍ଗାବତୀଙ୍କୁ ଯୁଦ୍ଧରେ ପରାସ୍ତ କରି ଗୋଣ୍ଡ୍ର-ବାନାକୁ ମୋଗଲ ସାମ୍ରାଜ୍ୟରେ ଯୋଗ କଲେ । ଦୁର୍ଗାବତୀ ପରାଜିତା ହୋଇ ଯୁଦ୍ଧଭୂମିରେ ଆତ୍ମହତ୍ୟା କଲେ । ସେମାନଙ୍କ ସାହାଯ୍ୟରେହିଁ ସେ ଭାରତରେ ନିରଙ୍କୁଶ ସମ୍ରାଟ୍ ହୋଇ ପାରିବେ ବୋଲି ତାଙ୍କର ପୂର୍ଣ୍ଣ ଆଶା ଓ ଦୃଢ଼ ଧାରଣା । ଫଳକୁ ଫଳ, ରାଜପୁତ ଜାତି ତାଙ୍କ ସ୍ନେହରେ ବଶୀଭୂତ ହୋଇ ତାଙ୍କୁ ସମ୍ରାଟରୂପେ ମାନି ଚଳିଲେ । ସେ ଅମ୍ବର ରାଜକନ୍ୟାଙ୍କୁ ବିବାହ କଲେ ଏବଂ ଜଣେ ରାଜପୁତ ବୀରଙ୍କୁ ରାଜ୍ୟରେ ଉଚ୍ଚ କର୍ମଚାରୀ କରି ରଖିଲେ । ଏଣୁ ରାଜପୁତମାନେ ସକଳ ଯୁଦ୍ଧରେ ଆକବରଙ୍କର ସହାୟ ହେଲେ ।

କିନ୍ତୁ ଚିତୋରର ରାଣା ଉଦୟ ସିଂହ ଆକବରଙ୍କର ଅଧୀନତା ସ୍ୱୀକାର ନ କରିବାରୁ, ଆକବର ୧୫୬୭ ସାଲରେ ଚିତୋର ଆକ୍ରମଣ କଲେ । ସେଠାର ରାଜପୁତମାନେ ଅତ୍ଯନ୍ତ ବଳ ପରାକ୍ରମ ସହିତ ଯୁଦ୍ଧ କରି ଶେଷରେ ହଟିଗଲେ । ଉଦୟ ସିଂହ ପ୍ରାଣଭୟରେ ଚିତୋର ଛାଡ଼ି ପଳାଇଲେ । ଫଳରେ ଚିତୋର ମୋଗଲ ସାମ୍ରାଜ୍ୟରେ ମିଶିଲା ।

ଉଦୟ ସିଂହଙ୍କ ମରଣ ପରେ, ତାଙ୍କର ବିଖ୍ୟାତ ବୀରପୁତ୍ର ପ୍ରତାପସିଂହ ଚିତୋରର ଉଦ୍ଧାର-ଚେଷ୍ଟା କଲେ । ୧୫୭୬ ସାଲରେ


ଆକବର-ରାଜ୍ୟ
କାବୁଲ
କାଶ୍ମୀର
ଦିଲ୍ଲୀ
ଆଗ୍ରା
କନୌଜ
ଆଜମୀର
ଏଲାହାବାଦ
ପାଟନା
ଗୌଡ
ଗୁଜରାଟ
ଓଡ଼ିଶା
ଗୋଲକୋଣ୍ଡା
ମହୀଶୂର
ସିଂହଳ

ଅକବର ସସେନା ମାନସିଂହଙ୍କୁ ପ୍ରତାପସିଂହଙ୍କ ସହିତ ଯୁଦ୍ଧ କରିବା ପାଇଁ ପଠାଇଲେ । ବୀରଶ୍ରେଷ୍ଠ ସ୍ୱଦେଶପ୍ରାଣ ପ୍ରତାପ ପ୍ରାଣପଣେ ଲଢ଼ାଇ କରି ଶେଷରେ ବିଫଳମନୋରଥ ହେଲେ ଏବଂ ତାଙ୍କର ଅବଶିଷ୍ଟ ଜୀବନ ବନବାସରେ କଟାଇଲେ । ୧୫୭୩ ରେ ଗୁଜରାଟ ଏବଂ ୧୫୭୪ ରେ ବଙ୍ଗ ମୋଗଲ ସାମ୍ରାଜ୍ୟର ଅନ୍ତର୍ଭୁକ୍ତ ହୋଇଥିଲା । ଏପରି ଅକବର ୧୫୭୬ ସାଲରେ ସିନ୍ଧୁପ୍ରଦେଶ ଭିନ୍ନ ସମଗ୍ର ହିନ୍ଦୁସ୍ଥାନର ଏକଛତ୍ର ପ୍ରଭୁ ହେଲେ । ତାଙ୍କ ରାଜ୍ୟର ଦକ୍ଷିଣସୀମା ନର୍ମଦା, ଉତ୍ତରସୀମା ହିମାଳୟ, ପୂର୍ବରେ ବଙ୍ଗୋପସାଗର ଓ ପଶ୍ଚିମରେ ଆରବସାଗର ।

ଅକବର ୧୫୮୧ ସାଲରେ ବିପୁଳ ସେନା ପଠାଇ କାବୁଲ ଅଧିକାର କରି ପକାଇଲେ । ୧୫୮୫ ପର୍ଯ୍ୟନ୍ତ ତାଙ୍କର ଜଣେ ପ୍ରତିନିଧି କାବୁଲ ଶାସନ କରୁଥିଲେ । ଅହମ୍ମଦନଗରର ପ୍ରସିଦ୍ଧ ରାଣୀ ଚାନ୍ଦବିବି ମୋଗଲ ରାଜତ୍ୱର ଅଧୀନତା ସ୍ୱୀକାର ନ କରିବାରୁ, ଅକବର ତାଙ୍କ ବିରୁଦ୍ଧରେ ପ୍ରକାଣ୍ଡ ସୈନ୍ୟ ପଠାଇଲେ । ଚାନ୍ଦବିବି ରାଣୀ ଦୁର୍ଗାବତୀଙ୍କ ପରି ଖୁବ୍ ସାହସରେ ଯୁଦ୍ଧ ଚଳାଇଲେ; କିନ୍ତୁ ନିଜ ରାଜ୍ୟରେ କେତେକ ଲୋକ ତାଙ୍କର ଶତ୍ରୁ ହୋଇ ଉଠିବାରୁ ସେ ବାଧ୍ୟ ହୋଇ ସନ୍ଧିଭିକ୍ଷା କଲେ । ସନ୍ଧିର ସର୍ତ୍ତ ଅନୁସାରେ ଅକବର ବେରାର ପାଇଲେ । ୧୫୯୯ ସାଲରେ ସେ ଖାଣ୍ଡେଶ୍ ମଧ୍ୟ ଅଧିକାର କରି ନେଲେ ।

ଅକବର ଜଣେ ଉଦାର, ବିଚକ୍ଷଣ ଓ ସର୍ବଶ୍ରେଷ୍ଠ ମୋଗଲ ସମ୍ରାଟ୍ । ତାଙ୍କର ଉତ୍ତମ ରାଜତ୍ୱରେ ଭାରତର ବିଶେଷ ମଙ୍ଗଳ ସାଧିତ ହୋଇଥିଲା । ସେ ହିନ୍ଦୁ ଜାତିକୁ ଆଦର ଓ ପ୍ରେମ କରୁଥାନ୍ତି । ଅଲ୍ଲାଉଦ୍ଦୀନଙ୍କ ସମୟରୁ କେବଳ ହିନ୍ଦୁ ଉପରେ 'ଜେଜିୟା' କର

ବସିଥିଲେ । ଅକବର ତାହା ଏକାଓବଳକେ ଉଠାଇ ନେଇ ହିନ୍ଦୁ-ଙ୍କର ଚିତ୍ତ ସନ୍ତୁଷ୍ଟ ଓ ସନ୍ତୋଷଭାଜନ ହେଲେ । ସେ ହିନ୍ଦୁ, ପଠାଣ ଉଭୟଙ୍କୁ ରାଜକର୍ମଚାରୀ ରୂପେ ନିଯୁକ୍ତ କରିଥିଲେ । ତାଙ୍କର ପକ୍ଷପାତ ନ ଥିଲା । ରାଜା ମାନସିଂହ ଅକବରଙ୍କର ପ୍ରଧାନ ବନ୍ଧୁ ଓ ସେନାପତି ଥିଲେ । ମାନସିଂହ କେତେକଦିନ ବଙ୍ଗ ଓ ବିହାରର ସୁବାଦାର ନିଯୁକ୍ତ ହୋଇଥିଲେ । ରାଜା ତୋଡରମଲ୍ଲ ଅକବରଙ୍କର ଅନ୍ତରଙ୍ଗ ବନ୍ଧୁ । ତାନ୍‌ସେନ୍ ମୋଗଲ୍ ରାଜସଭାର ପ୍ରଧାନ ସଙ୍ଗୀତଜ୍ଞ ।



ଅକବରଙ୍କ ସାମ୍ରାଜ୍ୟ କେତେ ଗୋଟି ପ୍ରଦେଶ ବା ସୁବାରେ ଏବଂ ପ୍ରତ୍ୟେକ ସୁବା କେତେ ଗୋଟି ଜିଲାରେ ବିଭକ୍ତ ହୋଇଥିଲା । ପ୍ରତ୍ୟେକ ସୁବାରେ ଜଣେ ସୁବାଦାର ନିଯୁକ୍ତ ହୋଇଥିଲେ । ପ୍ରତ୍ୟେକ ସୁବାରେ ଜଣେ ଜଣେ ବକ୍ସି ବା ସେନାପତି ଓ ଦେୱାନ୍ ରହୁଥିଲେ, ଦେୱାନ୍ କର ସଂଗ୍ରହ କରୁଥାନ୍ତି ।

ତୋଦରମଲ୍ଲଙ୍କ ତତ୍ତ୍ୱାବଧାନରେ ସାମ୍ରାଜ୍ୟର ଭୂମିସମ୍ପତ୍ତିର ପରିମାଣ ଓ କର ନିର୍ଦ୍ଧାରିତ ହେଲା । କର ଆଦାୟରେ ରାଜକର୍ମଚାରିଗଣ ରଇତମାନଙ୍କୁ ଯେପରି ପୀଡ଼ାପୀଡ଼ି ନ କରନ୍ତି, ସେଥି ପ୍ରତି ଦସ୍ତାନ୍ତ ସମ୍ରାଟଙ୍କର ତୀବ୍ର ଦୃଷ୍ଟି ଥିଲା ।

ଅକବର ବଡ଼ ସରଳ, ଶାନ୍ତି ଓ ଶାନ୍ତିପ୍ରିୟ । ସେ ପ୍ରଜାମାନଙ୍କ ସୁଖ ବଢ଼ାଇବାକୁ ବିସ୍ତର ଚେଷ୍ଟା କରୁଥାନ୍ତି । ସେ ହିନ୍ଦୁ ସମାଜର ସଂସ୍କାର କରିଥିଲେ । ତାଙ୍କର କଡ଼ା ଆଦେଶରେ ହିନ୍ଦୁମାନଙ୍କ ସତୀ-ଦାହପ୍ରଥା ରହିତ ହେଲା ଏବଂ ବିଧବା-ବିବାହ ପ୍ରଚଳିତ ହେଲା । ଅକବର ଖାଣ୍ଟି ମୁସଲମାନ ହେଲେହେଁ, ସେ ହିନ୍ଦୁ ଓ ଖ୍ରୀଷ୍ଟିୟାନ୍ ମତ ପ୍ରତି ବିଶେଷ ଅନୁରାଗ ଓ ସହାନୁଭୂତି ଦେଖାଉଥିଲେ । ସେ କେବେ କେବେ ହିନ୍ଦୁବେଶ ଧାରଣ କରୁଥାନ୍ତି । ସେ ଏକ ନୂତନ ଧର୍ମର ପ୍ରଚଳନ କରିଥିଲେ—ସେଥିରେ ପ୍ରତ୍ୟେକ ପ୍ରଧାନ ମତର ସାର ନିହିତ ଥିଲା । କିନ୍ତୁ ତାଙ୍କ ଉଦ୍ଦେଶ୍ୟାନୁଯାୟୀ, ହିନ୍ଦୁ ଜଗତ ସେହି ନୂତନ ଧର୍ମ ମାନିଲା ନାହିଁ । ତାଙ୍କ ମୃତ୍ୟୁ ସଙ୍ଗେ ସଙ୍ଗେ ତାହା ବିଲୟ ପ୍ରାପ୍ତ ହେଲା ।

ଅକବର ଜଣେ ସୁନ୍ଦର, ଉଚ୍ଚ ଓ ଦୀର୍ଘ ହସ୍ତପଦବିଶିଷ୍ଟ ଲୋକ । ତାଙ୍କର ପିତା ଓ ପିତାମହ ଦାଢ଼ି ରଖିଥିଲେ, କିନ୍ତୁ ଅକବର ଦାଢ଼ି ନ ରଖି କେବଳ ନିଶ ରଖିଥିଲେ । ସେ ଲେଖା ପଢ଼ା କିଛି ଜାଣି ନ ଥିଲେ; ତଥାପି ସେ ଜଣେ ଧୁରନ୍ଧର ଶାସକ, ବିଚକ୍ଷଣ ବ୍ୟକ୍ତି । ସେ ସର୍ବଦା ପଣ୍ଡିତମାନଙ୍କଠାରୁ ବିବିଧ ଶାସ୍ତ୍ର ବୁଝୁଥାନ୍ତି । ସେ ଗୋଟିଏ ପ୍ରକାଣ୍ଡ ପାଠାଗାର କରି ତହିଁରେ ବିବିଧ ଭାଷା ଓ ଧର୍ମର ବହି ରଖି-ଥିଲେ । ତାଙ୍କ ଆଦେଶରେ ସଂସ୍କୃତ ରାମାୟଣ ଓ ମହାଭାରତ ପାରସ୍ୟ ଭାଷାରେ ଅନୂଦିତ ହୋଇଥିଲା । ଚିତ୍ରବିଦ୍ୟା ଓ ସଙ୍ଗୀତରେ ତାଙ୍କର ଗଭୀର ଅନୁରାଗ ଥିଲା ।

ଆକବରଙ୍କର ଶେଷ ଜୀବନ ବିଷାଦପୂର୍ଣ୍ଣ ହୋଇଥିଲା । ତାଙ୍କ ପ୍ରିୟ ପୁତ୍ର ସେଲିମ୍ ତାଙ୍କ ପ୍ରତି ବିଦ୍ରୋହୀ ହୋଇ ଉଠିଲେ । କିନ୍ତୁ ପୁତ୍ରବତ୍ସଳ, ଶାନ୍ତସ୍ୱଭାବ ଓ ଉଦାରଚରିତ୍ର ଆକବର ସେଲିମଙ୍କୁ କ୍ଷମା କଲେ । ତାଙ୍କର ଘନିଷ୍ଠ ମିତ୍ର ଓ ପଣ୍ଡିତ ଆବୁଲଫଜଲଙ୍କୁ ସେଲିମ୍ ହତ୍ୟା କରିବାରୁ ଆକବର ନିତାନ୍ତ ମର୍ମାହତ ହୋଇ ଶେଷଜୀବନ କଟାଇଲେ । ଆବୁଲଫଜଲ୍ 'ଆଇନ-ଆକବରି' ନାମରେ ଗୋଟିଏ ପ୍ରକାଣ୍ଡ ଗ୍ରନ୍ଥ ଲେଖି ଯାଇଛନ୍ତି । ସେଥିରୁ ସମ୍ରାଟ ଆକବରଙ୍କ ବିଷୟ ଅନେକ ଜଣାଯାଏ । ଆକବର ୧୬୦୫ ସାଲରେ ମାନବଲୀଳା ସମ୍ବରଣ କଲେ ।

—:o:—

## ଜାହାଙ୍ଗୀର

ଆକବରଙ୍କ ମରଣ ପରେ, ଯୁବରାଜ ସେଲିମ୍ ଜାହାଙ୍ଗୀର ନାମ ଧରି ଦିଲ୍ଲୀର ବାଦ୍‌ସା ହେଲେ । ସେ ଜଣେ ରାଜପୁତକନ୍ୟାଙ୍କର ପାଣିଗ୍ରହଣ କରିଥିଲେ । ଖୁସ୍ରୁ ଏହାଙ୍କ ଗର୍ଭରୁ ଜାତ । ଖୁସ୍ରୁ ପିତାଙ୍କ ବିରୁଦ୍ଧରେ ଉଠିବାରୁ ସେ କାରାଗାରରେ ନିକ୍ଷିପ୍ତ ହେଲେ ।

ଆକବର ଥିବାବେଳେ ଦିଲ୍ଲୀରେ ନୂରଜାହାନ୍ ନାମ୍ନୀ ଜଣେ ପାରସ୍ୟ ଯୁବତୀ ଥିଲେ । ତାଙ୍କ ରୂପରେ ମୋହିତ ହୋଇ ସେଲିମ୍ ତାଙ୍କୁ ବିବାହ କରିବାକୁ ମନ ବଳାଇଲେ । କିନ୍ତୁ ଆକବର ସେଥିରେ ସମ୍ମତ ହେଲେ ନାହିଁ ଏବଂ ସେରଖାଁଙ୍କ ସଙ୍ଗେ ନୂରଜାହାନଙ୍କର ବିବାହ ଦେଲେ । ସେଲିମ୍ ସମ୍ରାଟ ହେବା ପରେ ସେରଖାଁଙ୍କୁ ହତ୍ୟା କରି ନୂରଜାହାନଙ୍କୁ ବିବାହ କଲେ । ସେହିଦିନଠାରୁ ନୂରଜାହାନହିଁ ସାମ୍ରାଜ୍ୟରେ ସର୍ବେସର୍ବା ହୋଇ ଉଠିଲେ । ସେ ଅତି ବୁଦ୍ଧିମତୀ— ନିଜ କ୍ଷମତା ବୃଦ୍ଧି ନିମନ୍ତେହିଁ ସର୍ବଦା ଚେଷ୍ଟା କରି ସଫଳ କାମ ହୋଇଥିଲେ ।

ସେର୍‌ଖାଁଙ୍କ ଔରସରେ ନୂର୍‌ଜାହାନଙ୍କ ଗର୍ଭରୁ ଲୟଲା ନାମରେ ଜଣେ କନ୍ୟା ଜନ୍ମଗ୍ରହଣ କରିଥିଲେ । ଲୟଲା ସହିତ ଅନ୍ୟତମ ପୁତ୍ର ସାହାଅରଙ୍କର ବିବାହ ଦେବା ପାଇଁ ଜାହାଙ୍ଗୀର ସ୍ଥିର କଲେ । ତାଙ୍କ ପରେ ସାହାଅରଙ୍କୁହିଁ ସମ୍ରାଟ କରିବା ତାଙ୍କର ଇଚ୍ଛା । କିନ୍ତୁ ତାଙ୍କର ଜ୍ୟେଷ୍ଠପୁତ୍ର ଖୁରମ୍ ଏହା ଜାଣିପାରି, ସମ୍ରାଟଙ୍କ ବିରୁଦ୍ଧରେ ବିଦ୍ରୋହ କଲେହେଁ ଶେଷରେ ହଟିଗଲେ ।

ଜାହାଙ୍ଗୀରଙ୍କ ସମୟରେ ମୋଗଲ ସାମ୍ରାଜ୍ୟରେ କୌଣସି ନୂତନ ରାଜ୍ୟ ମିଶି ନ ଥିଲା । ୧୬୨୨ ସାଲରେ ପାରସ୍ୟ ରାଜା ଅଫଗାନିସ୍ଥାନର କାନ୍ଦାହାର ନେଇଗଲେ ।

ଅକବରଙ୍କ ଶାସନନୀତି ଜାହାଙ୍ଗୀରଙ୍କ ସମୟରେ ଅନୁସୃତ ହେଲା । ଜାହାଙ୍ଗୀର ହିନ୍ଦୁ ଓ ପଠାଣଙ୍କୁ ଉଚ୍ଚକାର୍ଯ୍ୟରେ ନିଯୁକ୍ତକଲେ । ସେ ଅତି ବିଳାସପ୍ରିୟ—ମଦ୍ୟପାନ ଓ ଅଫିମ ସେବନରେ ହିଁ ବା ନଷ୍ଟ କରିଥାନ୍ତି । ସକଳ ରାଜକାର୍ଯ୍ୟ ନୂର୍‌ଜାହାନଙ୍କ ହାତରେ ରହିଲା । ନୂର୍‌ଜାହାନଙ୍କ ଚତୁରତା ଓ ବୁଦ୍ଧି ବଳରେ ମୋଗଲ ସାମ୍ରାଜ୍ୟରେ କୌଣସି ଗୋଳମାଳ ଜାତ ହେଲା ନାହିଁ ।

ଜାହାଙ୍ଗୀରଙ୍କ ସମୟରେ ମେବାରର ରାଣା ଥିଲେ କର୍ଣ୍ଣସିଂହ । ସମ୍ରାଟଙ୍କ ଆଦେଶରେ ଯୁବରାଜ ଖୁରମ୍ କର୍ଣ୍ଣସିଂହଙ୍କ ସହିତ ଯୁଦ୍ଧ କଲେ । କର୍ଣ୍ଣସିଂହ ପରାଜିତ ହୋଇ ସନ୍ଧି କଲେ । ସେହି ଦିନଠାରୁ ରାଜସ୍ଥାନ ଗୌରବ ମେବାର ମଧ୍ୟ ମୋଗଲ ବାଦ୍‌ସାଙ୍କର ଆଧିପତ୍ୟ ସ୍ୱୀକାର କରି ଚଳିଲା ।

ମହବତ୍‌ଖାଁ ଜାହାଙ୍ଗୀରଙ୍କର ଜଣେ ପ୍ରଧାନ ସେନାପତି । ସେ ଓ ଖୁରମ୍ ଯୁଦ୍ଧ କରି ଶତ୍ରୁମାନଙ୍କ ହାତରୁ ସାମ୍ରାଜ୍ୟ ରକ୍ଷା କରିଥିଲେ ।

ମାତ୍ର ଖସ୍ରୁଙ୍କ ମୃତ୍ୟୁ ପରେ ନୂରଜାହାନ୍ ଖୁରମଙ୍କୁ ଶତ୍ରୁ ଜ୍ଞାନ କଲେ । ମହବତ୍‌ଖାଁଙ୍କୁ ମଧ୍ୟ ନୂରଜାହାନ୍ ଭଲ ଦେଖୁ ନ ଥିଲେ । ଜାହାଙ୍ଗୀରଙ୍କ ଅତିରକ୍ତ ବିଳାସପ୍ରୀତି ଓ ସ୍ତ୍ରୈଣଭାବ ଦେଖି ଖୁରମ୍ ଓ ମହବତ୍‌ଖାଁ ସମ୍ରାଟଙ୍କ ବିରୁଦ୍ଧରେ ଉଠିଲେ ।

ସେତେବେଳେ ଜାହାଙ୍ଗୀର ଥିଲେ ପଞ୍ଜାବରେ । ମହବତ୍‌ଖାଁ କର୍ଣ୍ଣସିଂହଙ୍କ ସୈନ୍ୟ ସଙ୍ଗେ ଧରି ପଞ୍ଜାବ ଗଲେ ଏବଂ ସେଠାରେ ଜାହାଙ୍ଗୀରଙ୍କୁ ବନ୍ଦୀ କରି ଦେଲେ । କିନ୍ତୁ ନୂରଜାହାନଙ୍କ କୌଶଳରେ ସମ୍ରାଟ୍ ମୁକ୍ତ ହେଲେ ।

କେତେଜଣ ଇଂରେଜ ଲୋକ ବାଣିଜ୍ୟ କରିବା ସକାଶେ ୧୬୦୦ ସାଲରେ ଭାରତକୁ ଆସିଥିଲେ । ପୋର୍ତ୍ତୁଗୀଜ୍ ବେପାରିଦଳ ସେମାନଙ୍କର ପ୍ରତିଦ୍ୱନ୍ଦୀ । ଇଂଲଣ୍ଡର ରାଜା ୧୬୧୪ସାଲରେ ସର୍ ଥମସ୍ ରୋଙ୍କୁ ରାଜଦୂତରୂପେ ଭାରତକୁ ପଠାଇଲେ । ଜାହାଙ୍ଗୀର ରୋ'ଙ୍କୁ ବହୁ ସମ୍ମାନ କଲେ । ରୋ ଦିଲ୍ଲୀରେ ଦୁଇ ବର୍ଷ କାଳ ରହି ଜାହାଙ୍ଗୀରଙ୍କ ଶାସନ ସମ୍ବନ୍ଧରେ ଗୋଟିଏ ପୁସ୍ତକ ରଚନା କରିଥିଲେ । ଜାହାଙ୍ଗୀର ଇଂରେଜମାନଙ୍କୁ କେତେକ ବାଣିଜ୍ୟ-ସୁବିଧା କରିଦେଲେ ।

ସର୍ ଥମସ୍‌ରୋ ସମ୍ରାଟଙ୍କ ଜନ୍ମଦିବସ ଉତ୍ସବକୁ ନିମ୍ନଲିଖିତ ଭାବରେ ବର୍ଣ୍ଣନ କରିଅଛନ୍ତି । ଜାହାଙ୍ଗୀର ଗୋଟିଏ ସୁନ୍ଦର ଉଦ୍ୟାନ ମଧ୍ୟରେ ସୁବର୍ଣ୍ଣନିର୍ମିତ ଏକ ନିକ୍ତିର ଏକ ପାର୍ଶ୍ୱରେ ବସୁଥିଲେ । ଅନ୍ୟ ପାର୍ଶ୍ୱରେ ସୁନା ରୁପା ବହୁମୂଲ୍ୟ ବସନ ଭୂଷଣ ଇତ୍ୟାଦି ରଖା ଯାଉଥିଲା । ସେହି ସମସ୍ତ ଜିନିଷ ଓଜନରେ ସମ୍ରାଟଙ୍କର ସମାନ ହେବାର ଦେଖାଗଲେ ସେ ସବୁ ସମବେତ ଭଦ୍ରଲୋକଙ୍କ ମଧ୍ୟରେ ବିତରିତ ହେଉଥିଲା । ଏପରି ଛ'ଥର ଓଜନ ହୋଇ ଛ'ଥର ବହୁଧନରତ୍ନ ବଣ୍ଟନ କରା ଯାଉଥିଲା ।

ଜାହାଙ୍ଗୀରଙ୍କ ବିଳାସରେ ଏବଂ ରାଜକର୍ମଚାରୀଗଣଙ୍କ ଉଚ୍ଚ ବେତନରେ ସାମ୍ରାଜ୍ୟର ବିସ୍ତର ଧନବ୍ୟୟ ହେଉଥିଲା । ପ୍ରଜାମାନଙ୍କ ଶିକ୍ଷା କିମ୍ବା ଦେଶର କୌଣସି ହିତକର ଅନୁଷ୍ଠାନରେ କିଛି ବ୍ୟୟ କରାଯାଉ ନ ଥିଲା ।

ଜାହାଙ୍ଗୀର ଖୁବ୍ ସାହିତ୍ୟପ୍ରିୟ ଥିଲେ । ସେ ଚିତ୍ରାଙ୍କନ, ଚିତ୍ରରଞ୍ଜନ, ସଙ୍ଗୀତ ଓ ପାରସ୍ୟଭାଷା ବେଶ୍ ଜାଣିଥିଲେ । ତାଙ୍କ ସମୟରେ କେତେ-ଗୋଟି ସୁନ୍ଦର ପ୍ରାସାଦ ନିର୍ମିତ ହୋଇଥିଲା ।

—:( ※ ):—

## ସାଜାହାନ୍

ଜାହାଙ୍ଗୀରଙ୍କ ମୃତ୍ୟୁ ପରେ ନୂରଜାହାନଙ୍କ ପ୍ରରୋଚନାରେ ସାହରିଅର୍ ଦିଲ୍ଲୀର ସମ୍ରାଟ ହେଲେ । କିନ୍ତୁ ଯୁବରାଜ ଖୁରମ୍ ସାହରିଅରଙ୍କ ଚକ୍ଷୁ ନଷ୍ଟ କରିଦେଇ ନିଜେ ବାଦ୍‌ସା ହେଲେ । ସମ୍ରାଟ ହେବା ପରେ ସେ ସାଜାହାନ୍ ନାମରେ ପରିଚିତ ହେଲେ । ପିତାଙ୍କ ଜୀବିତାବସ୍ଥାରେ ସେ ଦାକ୍ଷିଣାତ୍ୟକୁ ଯାଇ ସେଠାର ପଠାଣ ସୁଲତାନମାନଙ୍କ ସଙ୍ଗେ ଯୁଦ୍ଧ କରିଥିଲେ । ବର୍ତ୍ତମାନ ସେହି ଯୁଦ୍ଧ ପୁଣି ଆରମ୍ଭ ହେଲା । ମୋଗଲ ସେନା ଅହମ୍ମଦନଗର ଅଧିକାର କରି ପକାଇଲେ । କିନ୍ତୁ ଗୋଲକୋଣ୍ଡା ଓ ବିଜାପୁରର ସୁଲତାନମାନେ ସ୍ୱାଧୀନ ହୋଇ ରହିଲେ ।

ଏହି ଦୁଇ ରାଜ୍ୟ ମଧ୍ୟ ଜୟ କରିବା ପାଇଁ ସାଜାହାନ୍ ତାଙ୍କ କନିଷ୍ଠ ପୁତ୍ର ଔରଂଜେବଙ୍କୁ ସସୈନ୍ୟ ପ୍ରେରଣ କଲେ । ଔରଂଜେବ୍ ବିଜାପୁର ଜିଣି ତାହା ମୋଗଲ ସାମ୍ରାଜ୍ୟର ଅଙ୍ଗୀଭୂତ କଲେ ଏବଂ ଗୋଲକୋଣ୍ଡାର ଏକ ଅର୍ଦ୍ଧାଂଶ କରଗତ କଲେ । ସାଜାହାନ୍ ଔରଂଜେବଙ୍କୁ ଦାକ୍ଷିଣାତ୍ୟରେ ପ୍ରତିନିଧି ନିଯୁକ୍ତ କଲେ । ଔରଂଜେବ୍ ସେଠାରେ ନିଜ କ୍ଷମତା ବଢ଼ାଇବାକୁ ଲାଗିଲେ ।

ସାଜାହାନ୍ ରାଜ୍ୟ ମଧ୍ୟରେ ଆଦେଶ ପ୍ରଚାର କଲେ ଯେ, କୌଣସି ସ୍ଥାନରେ ନୂତନ ହିନ୍ଦୁ-ଦେବମନ୍ଦିର ଆଉ ନିର୍ମିତ ହେବ ନାହିଁ । ଏଥିରୁ ତାଙ୍କର ହିନ୍ଦୁ-ଘୃଣା ସ୍ପଷ୍ଟ ଧରାଯାଏ । ସମ୍ରାଟ ହିନ୍ଦୁଧର୍ମରେ ଏପରି ବାଧା ଦେଲେହେଁ, ସେ ହିନ୍ଦୁମାନଙ୍କୁ ରାଜକର୍ମଚାରୀ ପଦରେ ନିଯୁକ୍ତ କରୁଥିଲେ ।

ସାଜାହାନଙ୍କ ଶାସନରେ ରାଜ୍ୟରେ ଶାନ୍ତି ଥିଲା । ଏଣୁ ସାମ୍ରାଜ୍ୟର ସର୍ବାଙ୍ଗୀନ ଉନ୍ନତି ହୋଇଥିଲା । ବସ୍ତ୍ରର ବାଣିଜ୍ୟ ଯୋଗେ ପ୍ରଜାମାନେ ସମୃଦ୍ଧିସମ୍ପନ୍ନ ହୋଇ ଉଠିଲେ, ରାଜକୋଷ ଧନରତ୍ନରେ ପୂର୍ଣ୍ଣ ହେଲା । ସମ୍ରାଟଙ୍କ ଧନଭଣ୍ଡାରପ୍ରାସାଦର ଦୁଇଗୋଟି କକ୍ଷ— ପ୍ରତ୍ୟେକ କକ୍ଷ ୭୦ଫୁଟ ଦୀର୍ଘ ଓ ୩୦ଫୁଟ ଓସାର । ଗୋଟିଏ ସୁବର୍ଣ୍ଣରେ ଅପରଟି ରୌପ୍ୟରେ ପରିପୂର୍ଣ୍ଣ ଥିଲା ।

ସାଜାହାନ୍ ବଡ଼ ସୌନ୍ଦର୍ଯ୍ୟପ୍ରିୟ । ସେ ବହୁ ଧନବ୍ୟୟ କରି ଅନେକ ମନୋହର ଓ ଚମତ୍କାର ଅଟ୍ଟାଳିକା, ମସ୍‌ଜିଦ୍ ଇତ୍ୟାଦି ତିଆରି କରାଇ ଥିଲେ । ୧୬୨୮ ସାଲରେ ସେ ତାଙ୍କର ବହୁମୂଲ୍ୟ ମୟୂରସିଂହାସନଟି ନିର୍ମାଣ କରାଇଲେ । ସିଂହାସନଟିର କାମ ଶେଷ ହେବାକୁ ପ୍ରାୟ ସାତବର୍ଷ କାଳ ଲାଗିଥିଲା । ତାହା ଗୋଟିଏ ପଲଙ୍କ ପରି — ଚାରିଗୋଟି ଖୁରା ଉପରେ ଠିଆ । ଉପରଭାଗରେ ବିଚିତ୍ର-କାରୁକାମ-ଖଚିତ ଏକ ଚାନ୍ଦୁଆ— ଏହାର ନିମ୍ନଭାଗରେ ୧୨ ଗୋଟି ସ୍ତମ୍ଭ । ପ୍ରତ୍ୟେକ ସ୍ତମ୍ଭର ଠିକ୍ ଶିଖରରେ ଦୁଇଟି ଲେଖାଏ ମୟୂର-ପ୍ରତିମୂର୍ତ୍ତି । ଏହି ପ୍ରତିମୂର୍ତ୍ତି-ଗୁଡ଼ିକ ବିବିଧ ରତ୍ନ-ଭୂଷିତ । ପ୍ରତ୍ୟେକ ମୟୂରର ଉଭୟ ପକ୍ଷରେ ହୀରା, ନୀଳା, ମୋତି, ମାଣିକ୍ୟ, ମୁକ୍ତାଦି ଖଚିତ ଦୁଇଟି ବୃକ୍ଷ । ଏହି ସିଂହାସନ-ନିର୍ମାଣରେ ସମ୍ରାଟ ୧୦୦ ଲକ୍ଷ ରୌପ୍ୟ ମୁଦ୍ରା ବ୍ୟୟ କରିଥିଲେ । ଏହା ଛଡ଼ା, ଆଉ କେତୋଟି ଶ୍ରେଷ୍ଠ ସିଂହାସନ ମଧ୍ୟ ପ୍ରସ୍ତୁତ ହୋଇଥିଲା ।

ସାଜାହାନଙ୍କର ବେଗମ୍ ମମ୍‌ତାଜ୍‌ମହାଲ୍ । ମମ୍‌ତାଜ୍ ଅତି ରୂପବତୀ, ଗୁଣବତୀ ଓ ପତିବ୍ରତା; ଏଣୁ ତାଙ୍କ ପ୍ରତି ସମ୍ରାଟ ଅତ୍ୟନ୍ତ ଆସକ୍ତ ଥିଲେ । ମମ୍‌ତାଜଙ୍କ ଗର୍ଭରୁ ଦୁଇଟି କନ୍ୟା ଓ ଚାରି ଗୋଟି ପୁଅ ଜାତ ହୋଇଥିଲେ । ମମ୍‌ତାଜ ପ୍ରସୂତି-ରୋଗରେ ପୀଡ଼ିତ ହୋଇ ଇହଲୀଳା ସାଙ୍ଗ କଲେ । ସେ ମରିବା ପୂର୍ବେ ପତିଙ୍କ, କହିଥିଲେ— 'ମୋ ମୃତ୍ୟୁ ପରେ ମୋର ସ୍ମୃତି-ଚିହ୍ନ ସ୍ୱରୂପ ଏପରି ଗୋଟାଏ କବର ତିଆରି କରାଇବ, ଯାହା ସୌନ୍ଦର୍ଯ୍ୟରେ ଜଗତରେ ଅଦ୍ୱିତୀୟ ହୋଇ ଯାଇବ ।'



ଏକପତ୍ନୀବ୍ରତ ସାଜାହାନ୍ ମମ୍‌ତାଜଙ୍କର ଅନ୍ତିମ ଅନୁରୋଧ ରକ୍ଷା କରିଥିଲେ । ପତ୍ନୀଙ୍କ ମରଣ ପରେ, ସେ ତାଙ୍କର ସ୍ମୃତିରକ୍ଷାର୍ଥେ ଅଗ୍ରା

ନଗରୀରେ ଯମୁନାତୀରରେ ଶ୍ୱେତମର୍ମର ପ୍ରସ୍ତରର ଚମତ୍କାର ମନୋରମ ଏକ ପ୍ରାସାଦ ତିଆରି କରାଇଲେ । ଏହି ଅଟ୍ଟାଳିକାର ନାମ ରଖାଗଲା 'ତାଜ୍‌ମହଲ୍' । ବାସ୍ତବିକ ତାଜ୍‌ମହଲ୍ ଭଳି ବଡ଼ିଆ, ଚିତ୍ତାକର୍ଷକ ପ୍ରାସାଦ ପୃଥିବୀରେ ବିରଳ । ଆଜିକାଲି ସୁଦ୍ଧା ତାହା ଦେଖି ଦର୍ଶକ ଏକାବେଳକେ ମୁଗ୍ଧ ।

ଦିଲ୍ଲୀ ନିକଟରେ ସେ ଗୋଟିଏ ସୁନ୍ଦର ଓ ବିଶାଳ ସହର ବସାଇଲେ—ନାମ ସାଜାହାନବାଦ୍ । ସେ 'ମୋତିମସ୍‌ଜୀଦ୍' ଓ 'ଜୁମାମସ୍‌ଜୀଦ୍' ନାମରେ ଦୁଇଗୋଟି ମସ୍‌ଜୀଦ୍ ନିର୍ମାଣ କରାଇଥିଲେ ।

ସାଜାହାନଙ୍କର ଚାରିପୁଅ—ଦାରା, ସୁଜା, ଔରଂଜେବ ଓ ମୁରାଦ୍ । ସେ ପୁଅମାନଙ୍କୁ ବଡ଼ ଆଦର କରୁଥାନ୍ତି, କିନ୍ତୁ ସମସ୍ତଙ୍କ ଅପେକ୍ଷା ଦାରା ତାଙ୍କର ଅଧିକ ପ୍ରିୟ ।

—:o:—

## ଔରଂଜେବ୍

ସାଜାହାନଙ୍କ ଜୀବିତାବସ୍ଥାରେ ଔରଂଜେବ୍ ଦାକ୍ଷିଣାତ୍ୟର, ସୁଜା ବଙ୍ଗଳାର ଏବଂ ମୁରାଦ ଗୁଜରାଟର ଶାସକ ଥିଲେ । ସାଜାହାନଙ୍କ ମୃତ୍ୟୁ ପରେ ଦାରା ସମ୍ରାଟ ହେବାର କଥା । କିନ୍ତୁ ଔରଂଜେବ୍ ଭାଇମାନଙ୍କୁ ହତ୍ୟା କରି ଦିଲ୍ଲୀର ବାଦ୍‌ସା ହେଲେ ।

ଔରଂଜେବ୍ ଜଣେ ଖାଣ୍ଟି ମୁସଲମାନ—ସୁନ୍ନିଶାଖାବଲମ୍ବୀ । କୋରାନ୍ ତାଙ୍କର ବଡ଼ ସମ୍ମାନ ଓ ଆଦରର ଜିନିଷ । ସେ ଇସଲାମ୍ ଧର୍ମର ଷିଆଶାଖା ଓ ହିନ୍ଦୁଧର୍ମ ପ୍ରତି ବିଦ୍ବେଷୀଙ୍କର ଅତ୍ୟାଚାର ଓ ନିଷ୍ଠୁରତା ଦେଖାଉଥାନ୍ତି । ସେ ନିୟମିତ ଭାବରେ ମସ୍‌ଜୀଦରେ ଯାଇ ପ୍ରାର୍ଥନାଦି



କରୁଥିଲେ । ସେ ଭୋଗବିଳାସରେ ଅନୁରକ୍ତ ନ ହୋଇ ସର୍ବଦା ସରଳ ନିରାଡ଼ମ୍ବର ଜୀବନ କଟାଉଥିଲେ । ସେ ସଙ୍ଗୀତର ପରମ ଶତ୍ରୁ । କଥିତ ଅଛି, ସେ ନିଜେ ଟୋପି ସିଲାଇ କରି, କୋରାନ୍‌ର ପ୍ରତିଲିପି ଲେଖି ବିକ୍ରି କରୁଥିଲେ ଏବଂ ସେହି ଧନରେ ବ୍ୟକ୍ତିଗତ ବ୍ୟୟାଦି ଚଳାଉଥିଲେ । ଏହି ସଞ୍ଚିତ ଧନହିଁ ଦରିଦ୍ରମାନଙ୍କୁ ବିତରଣ କରାଯାଉଥାଏ ଏବଂ ତାଙ୍କ କବର ଉପରେ ରଖା ଯାଇଥିଲା । କିନ୍ତୁ ରାଜନୀତି କ୍ଷେତ୍ରରେ ସେ ପରମ ଅନ୍ଧ, ବିଧର୍ମୀର ରକ୍ତପାତ ଏବଂ ଶତ୍ରୁର ବିନାଶ ଘଟାଇବାକୁ ତିଳେ ମାତ୍ର ପଛଘୁଞ୍ଚା ଦେଉ ନ ଥିଲେ ।

ହିନ୍ଦୁମାନଙ୍କୁ ପୀଡ଼ା ଦେବା ଏକ ମହାପୁଣ୍ୟ କର୍ମ ବୋଲି ତାଙ୍କର ଦୃଢ଼ ବିଶ୍ୱାସ ।

ଔରଂଜେବ୍ ସମ୍ରାଟ ହେବାମାତ୍ରେ ହିନ୍ଦୁଜାତି ପ୍ରତି ଘୃଣାନୀତି ପ୍ରୟୋଗ କଲେ । ସେ ହିନ୍ଦୁମାନଙ୍କୁ କୌଣସି ରାଜକାର୍ଯ୍ୟରେ ନିଯୁକ୍ତ କଲେ ନାହିଁ । ଗାଈ, ବ୍ରାହ୍ମଣ ଓ ହିନ୍ଦୁ ଦେବତାମାନଙ୍କ ପ୍ରତି ସେ ଭୀଷଣ ଦ୍ରୋହ କଲେ । ଏଣୁ ଉଦୟପୁର ରାଣା ବୀରକୁଳତିଳକ ରାଜସିଂହ ତାଙ୍କର ପ୍ରଧାନ ଶତ୍ରୁ ହୋଇ ଉଠିଲେ । ସେ ମାରବାଡ଼ରାଜା ଯଶୋବନ୍ତ ସିଂହଙ୍କୁ କୌଶଳରେ କାବୁଲକୁ ପଠାଇ ତାଙ୍କ ଅନୁପସ୍ଥିତିରେ ତାଙ୍କ ପୁତ୍ରକୁ ବିଷପ୍ରୟୋଗରେ ବଧକଲେ । ଏହି ଦୁଃସମ୍ବାଦରେ ଯଶୋବନ୍ତ ସିଂହଙ୍କର ଜୀବନ ଗଲା ।

ଆକବର, ଜାହାଙ୍ଗୀର ଓ ସାଜାହାନ୍ ଜେଜିୟା କର ଉଠାଇ ଦେଇ ଥିଲେ । କିନ୍ତୁ ହିନ୍ଦୁ ବିଦ୍ୱେଷୀ ଔରଂଜେବ୍ ହିନ୍ଦୁଜାତିଠାରୁ ପୁନର୍ବାର ସେହି ଘୃଣ୍ୟ କର ଆଦାୟ କଲେ । ଏଣୁ ରାଜପୁତମାନେ ତାଙ୍କର ପରମ ଶତ୍ରୁ ହୋଇ ଉଠିଲେ । ଔରଂଜେବଙ୍କ ଆଦେଶରେ ଅନେକ ହିନ୍ଦୁଦେବାଳୟ ଚୂର୍ଣ୍ଣ ବିଚୂର୍ଣ୍ଣ ହେଲା । ଏଭଳି ମନ୍ଦିରମାନଙ୍କ ମଧ୍ୟରେ କାଶୀର ବିଖ୍ୟାତ ବିଶ୍ୱନାଥ ମନ୍ଦିର ପ୍ରଧାନ । ସେହି ମନ୍ଦିର ଭଙ୍ଗା ହୋଇ ସେଠାରେ ଗୋଟିଏ ମସ୍‌ଜିଦ୍ ତିଆରି ହେଲା ।

ରାଜସିଂହ ଥରେ ଆକ୍ଷେପ କରି ଔରଂଜେବଙ୍କଠାରୁ ଦୀର୍ଘ ପତ୍ରଟିଏ ଲେଖିଥିଲେ:—"ଆକବର ୫୨ ବର୍ଷକାଳ ଏହି ଦେଶ ଶାନ୍ତିରେ ଶାସନ କରିଥିଲେ । ସେ ଜାତିଧର୍ମ ନିର୍ବିଶେଷରେ ସମସ୍ତଙ୍କୁ ସମାନ ଦେଖୁଥିଲେ । ଜାହାଙ୍ଗୀର ଓ ସାଜାହାନ୍ ମଧ୍ୟ ଆକବରଙ୍କର ଏହି ଉଦାର ନୀତି ଅନୁସରଣ କରି ହିନ୍ଦୁଜାତିର ସ୍ନେହ, ଭକ୍ତି ଅର୍ଜନ କରି ପାରିଥିଲେ । କିନ୍ତୁ ଦୁଃଖର ବିଷୟ, ହିନ୍ଦୁମାନେ ଆଜି ତୁମର

ପଦଦଳିତ, ଲାଞ୍ଛିତ, ଏଣୁ ତୁମ୍ଭେ ରାଜତ୍ୱରେ ଅସନ୍ତୁଷ୍ଟ । ବୁଝିରଖ, ଈଶ୍ୱର ସମସ୍ତଙ୍କର—ତାଙ୍କ ଚକ୍ଷୁରେ ହିନ୍ଦୁ, ପଠାଣ ଏକ । ହିନ୍ଦୁଙ୍କୁ ଆଉ ପୀଡ଼ା ଦିଅ ନାହିଁ ।"

ଏହି ପତ୍ର ପାଇବା କ୍ଷଣି ଔରଂଜେବ୍ ରାଜସିଂହଙ୍କ ସହିତ ଯୁଦ୍ଧ କଲେ । ସେ ରାଜପୁତାନାର ବିଶେଷ ଅନିଷ୍ଟ ସାଧନ କଲେ । କିନ୍ତୁ ଶେଷରେ ସେ ରାଜସିଂହଙ୍କ ହାତରେ ଘୋର ପରାଭବ, ଲାଞ୍ଛନା ଭୋଗି ବ୍ୟସ୍ତ ହୋଇଥିଲେ । ଏଣୁ ଦୁହିଙ୍କ ମଧ୍ୟରେ ସନ୍ଧି ହେଲା ।

ଔରଂଜେବ୍ ଇସଲାମ ମତର ମହତ୍ତ୍ୱ ରକ୍ଷାପାଇଁ ହିନ୍ଦୁଧର୍ମ ପ୍ରତି ଭୟଙ୍କର ହିଂସା ଦେଖାଉ ଥାନ୍ତି । କାହାରି ଉପରେ ତାଙ୍କର ବିଶ୍ୱାସ ନ ଥିଲା—କେହି ତାଙ୍କୁ ବିଶ୍ୱାସ କରୁ ନ ଥିଲେ ।

## ମହାରାଷ୍ଟ୍ର ଜାତିର ଉତ୍ଥାନ

ଦାକ୍ଷିଣାତ୍ୟର ପଶ୍ଚିମ ଭାଗରେ ଅନୁର୍ବର, ପର୍ବତମୟ ଏକ ପ୍ରଦେଶ ଅବସ୍ଥିତ—ନାମ ମହାରାଷ୍ଟ୍ର ପ୍ରଦେଶ । ସେଠାର ଅଧିବାସିମାନେ ମହାରାଷ୍ଟ୍ର ଓ ମରହଟ୍ଟା ଜାତି । ସେମାନେ ପାର୍ବତ୍ୟ ପ୍ରଦେଶର ଅଧିବାସୀ ଥିବା ଯୋଗୁଁ ବଳିଷ୍ଠ, ସହିଷ୍ଣୁ ଓ ପରିଶ୍ରମୀ । ଏହି ପ୍ରଦେଶର ପ୍ରାୟ ପ୍ରତ୍ୟେକ ପାହାଡ଼ ଉପରେ ଗୋଟିଏ ଗୋଟିଏ ଦୁର୍ଗ ଥିଲା, ମରହଟ୍ଟାମାନେ ସେଠାରେ ରହି ପ୍ରଦେଶକୁ ଶତ୍ରୁ-ଆକ୍ରମଣରୁ ରକ୍ଷା କରୁଥିଲେ । ମହାରାଷ୍ଟ୍ରମାନେ ପର୍ବତ ଉପରେ, ବନ ଜଙ୍ଗଲରେ ଅତି ସହଜରେ ଯାତାୟାତ କରି ପାରନ୍ତି ।

ପୂର୍ବ କାଳରେ ଏହି ପ୍ରଦେଶ କେତେକ କାଳ ଅନ୍ଧ୍ରମାନଙ୍କ ଅଧୀନରେ ଥିଲା । ଅନ୍ଧ୍ରପତନ ପରେ ତାହା ଚାଲୁକ୍ୟ ରାଜାଗଣଙ୍କ

ଅଧିକାରରେ ଆସିଲା । ଅଲାଉଦ୍ଦୀନ୍ ଖିଲ୍‌ଜୀ ଏହି ପ୍ରଦେଶ ଥରେ ଜୟ କରିଥିଲେ । ସେହି ଦିନଠାରୁ ମହମ୍ମଦ ବିନ୍ ତୋଗଲକଙ୍କ ରାଜତ୍ୱ ଯାଏଁ ମହାରାଷ୍ଟ୍ର ପ୍ରଦେଶ ଦିଲ୍ଲୀ ସୁଲତାନଙ୍କୁ ମାନି ଚଳୁଥାଏ । ପରେ ୧୩୪୭ ସାଲରେ ପ୍ରଦେଶଟି ବାହ୍ମାମନି ରାଜ୍ୟର ଅନ୍ତର୍ଭୁକ୍ତ ହେଲା । ବାହମନି ରାଜ୍ୟ ଖଣ୍ଡ ଖଣ୍ଡ ହେବାକ୍ଷଣି, ମହାରାଷ୍ଟ୍ର ପ୍ରଦେଶର କେତେକ ଭାଗ ବିଜାପୁର ସୁଲତାନଙ୍କର ଏବ ଅବଶିଷ୍ଟାଂଶ ମହମ୍ମଦ-ନଗରର ଶାସନାଧୀନ ହେଲା । ଏହି ଦୁଇ ରାଜ୍ୟର ସୁଲତାନମାନେ ମହାରାଷ୍ଟ୍ରମାନଙ୍କ ସାହସ, ପରାକ୍ରମ ଓ ଯୁଦ୍ଧନୈପୁଣ୍ୟରେ ପ୍ରୀତ ହୋଇ ସେମାନଙ୍କୁ ନିଜ ନିଜର ସୈନିକରୂପେ ଏବ ଉଚ୍ଚ କର୍ମଚାରୀ ରୂପେ ରଖିଥିଲେ ।



## ସିବାଜୀ

ମହମ୍ମଦନଗରର ସୁଲତାନ ସାହାଜୀ ନାମକ ଜଣେ ମରହଟ୍ଟା ସର୍ଦ୍ଦାରଙ୍କୁ ପୁନାନଗରରେ କେତେକ ଜାଗୃରି ଭୂମି ଖଞ୍ଜି ଦେଇ-ଥିଲେ । ଶିବାଜୀ ତାଙ୍କର ପୁତ୍ର । ସମ୍ରାଟ ସାଜାହାନଙ୍କ ସମୟରେ ମହମ୍ମଦ-ନଗର ମୋଗଲ ସାମ୍ରାଜ୍ୟରେ ମିଶି ଯିବାରୁ, ସାହାଜୀ ବିଜାପୁର ସୁଲ-ତାନଙ୍କ ନିକଟରେ ଯାଇ ଚାକିରି କରିବାକୁ ଲାଗିଲେ । ତାଙ୍କର ଅପୂର୍ବ ରାଜଭକ୍ତି, ଚତୁରତା, ବୀରତ୍ୱ ଓ ଧୈର୍ଯ୍ୟରେ ତୃପ୍ତ ହୋଇ ବିଜାପୁର ସୁଲତାନ ତାଙ୍କୁ ତାଞ୍ଜୋର ଜାଗୃରି ସ୍ୱରୂପ ଦାନ କଲେ । ସେ ପୁନା ଛାଡ଼ି ତାଞ୍ଜୋରରେ ଯାଇ ନିବାସ କଲେ; କିନ୍ତୁ ସିବାଜୀ ଓ ତାଙ୍କ ମା ପୁନାରେହିଁ ଅବସ୍ଥାନ କରିବାକୁ ଲାଗିଲେ । ସିବାଜୀଙ୍କ ମା ଜଣେ ବୁଦ୍ଧିମତୀ, ସୁଶିକ୍ଷିତା, ସ୍ୱାଧୀନତା ପ୍ରିୟା ବୀରନାରୀ । ତାଙ୍କର ଉପରେ ସିବାଜୀଙ୍କର ବାଲ୍ୟ ଶିକ୍ଷା ଭାର ନ୍ୟସ୍ତ ହେବାରୁ, ତାଙ୍କ ଶିକ୍ଷାଦୀକ୍ଷାରେ ସିବାଜୀ ଶେଷରେ ଜଗଦ୍-ପ୍ରସିଦ୍ଧ ବୀର ହୋଇ ପାରିଥିଲେ ।



ଶିବାଜୀ ଜଣେ ବ୍ରାହ୍ମଣ ପଣ୍ଡିତଙ୍କଠାରୁ ରାଜନୀତି ଧନୁର୍ବିଦ୍ୟା ଶିକ୍ଷା କଲେ । ସେ ଥିଲେ ମାତୃଭକ୍ତ; ମା ତାଙ୍କୁ ରାମାୟଣ ଓ ମହାଭାରତ ଶିଖାଇଲେ । ସେ ଜଣେ ଖାଣ୍ଟି, ନିଷ୍ଠାପର ହିନ୍ଦୁ ରମଣୀ; ଏଣୁ ବିଧର୍ମୀ-ମାନଙ୍କୁ ପ୍ରଧାନତଃ ପଠାଣଜାତିକୁ ହୃଦୟର ସହିତ ଘୃଣା କରୁଥାନ୍ତି । ପଠାଣମାନଙ୍କ ଅତ୍ୟାଚାରରୁ ହିନ୍ଦୁଧର୍ମକୁ ରକ୍ଷା କରିବାକୁ ଯୁଦ୍ଧ କରିବା ପାଇଁ ସେ ବାଲ୍ୟ ବୟସରୁହିଁ ବୀରପୁତ୍ର ଶିବାଜୀଙ୍କୁ ଉତ୍ତେଜିତ, ଉଦ୍‌ବୁଦ୍ଧ କରୁଥିଲେ । ପୁରାଣ-ବର୍ଣ୍ଣିତ ବୀରସକଳ ଶିବାଜୀଙ୍କର ଆଦର୍ଶ— ସେମାନଙ୍କ

ଆରଗାଥାରେ ସେ ମୁଗ୍ଧ । ମାତାଙ୍କ ଶିକ୍ଷାବଳରେ ସେ ପିଲାଦିନୁହିଁ ପଠାଣଜାତିକୁ ଅନ୍ତରର ସହିତ ଘୃଣା କରିବାକୁ ଲାଗିଲେ । ସେ ଯୌବନାବସ୍ଥାରେ ଗୋ ବ୍ରାହ୍ମଣ ଓ ହିନ୍ଦୁ ଦେବପ୍ରତିମାମାନଙ୍କୁ ମୁସଲମାନ ଅତ୍ୟାଚାରରୁ ରକ୍ଷା କରିବା ନିମନ୍ତେ ବଦ୍ଧପରିକର ହୋଇ ଉଠିଲେ ।

ସେତେବେଳେ ମହାରାଷ୍ଟ୍ର ପ୍ରଦେଶରେ ତୁକାରାମ ଓ ରାମଦାସ ନାମକ ଦୁଇଜଣ ଜ୍ଞାନୀ ଓ ଭକ୍ତକବି ଥିଲେ । ଏ ଦୁହେଁ ହିନ୍ଦୁମତକୁ ସୁଦୃଢ଼ କରିବା ପାଇଁ ପ୍ରଗାଢ଼ ଚେଷ୍ଟା କରୁଥାନ୍ତି । ସିବାଜୀ ଏ ଦୁଇ ମହାତ୍ମାଙ୍କ ପରାମର୍ଶ ଓ ଆଦର୍ଶରେ ପରିଚାଳିତ ହେଲେ ।

ସିବାଜୀ ୧୬୨୭ ସାଲରେ ଜନ୍ମଗ୍ରହଣ କରିଥିଲେ । ସେ ଯୌବନାବସ୍ଥାରେ କେତେକ ମରହଟ୍ଟା ସୈନ୍ୟ ସଂଗ୍ରହ କରି ବିଜାପୁର ଲୁଣ୍ଠନ ଆରମ୍ଭ କଲେ । ତାଙ୍କ ଦୋଷରେ ତାଙ୍କ ପିତା ସାହାଜୀ ବିଜାପୁରରେ ୪ ବର୍ଷ ବନ୍ଦୀ ହେଲେ । ପିତାଙ୍କ ପ୍ରାଣନାଶ ଭୟରେ ସିବାଜୀ କେତେକ ଦିନ ବିଜାପୁର ଲୁଣ୍ଠନରୁ କ୍ଷାନ୍ତହେଲେ । ତାର କେତେକ ସମୟ ପରେ ସେ 'ମାବାଲି' ନାମକ ପାହାଡ଼ିଆ ସେନା ସଂଗ୍ରହକରି ଦୁର୍ଗ ପରେ ଦୁର୍ଗ ଅଧିକାର କରିନେଲେ; ଶେଷରେ କୋଙ୍କାନ୍ ପ୍ରଦେଶ ଜିଣିଲେ ।

ବିଜାପୁର ସୁଲତାନ ୧୬୫୯ ସାଲରେ ସିବାଜୀଙ୍କ ବିରୁଦ୍ଧରେ ତାଙ୍କ ସେନାପତି ଅଫ୍‌ଜଲ୍ ଖାଁଙ୍କୁ ସସୈନ୍ୟ ପଠାଇଲେ । ସିବାଜୀ କିନ୍ତୁ ଏଥିରେ ଲବମାତ୍ର ଅଧୀର ନ ହୋଇ ଅତି କୌଶଳରେ ଶତ୍ରୁ ଜିଣିବାର ଠିକ୍ କଲେ । ଯୁଦ୍ଧ ତାଙ୍କର ଅଭିପ୍ରେତ ନ ଥିଲା । ସେ ଅଫ୍‌ଜଲ ଖାଁଙ୍କୁ କହି ପଠାଇଲେ ଯେ, ସେ ସନ୍ଧି କରିବାକୁ ପ୍ରସ୍ତୁତ । ଖାଁ ଏହି ପ୍ରସ୍ତାବରେ ସମ୍ମତ ହେଲେ । ସନ୍ଧି ନିମନ୍ତେ ଦୁହେଁ ଗୋଟିଏ ସ୍ଥାନରେ ସମବେତ ହେଲେ । ପାଖରେ କେହି ସୈନିକ ନ ଥିଲେ । ସିବାଜୀଙ୍କୁ ଏକାକୀ

ଦେଖି ତାଙ୍କୁ ହଠାତ୍ ହତ୍ୟାକରିବା ପାଇଁ ଅଫ୍‌ଜଲ୍ ଖାଁ ଆଗରୁ ପ୍ରସ୍ତୁତ ହୋଇ ଯାଇଥିଲେ । ଚତୁର ସିବାଜୀ ଖାଁଙ୍କର ଏହି ଅବିଶ୍ୱାସ କପଟ-କଳ୍ପନା ଠଉରାଇ ପାରି, ସେ ବି ଖାଁଙ୍କୁ ଅକସ୍ମାତ୍ ବଧ କରିବା ନିମନ୍ତେ ପ୍ରସ୍ତୁତ ଥିଲେ । ସେ ତାଙ୍କ ପରିଚ୍ଛଦ ମଧ୍ୟରେ ଗୋଟିଏ ତୀକ୍ଷ୍ଣ ବାଘନଖ ଲୁଚାଇ ରଖିଥିଲେ । ଅଫ୍‌ଜଲ ଖାଁ ତାଙ୍କୁ ଆକ୍ରମଣ କରିବା ମାତ୍ରେ ସିବାଜୀ ବାଘ ନଖରେ ଖାଁଙ୍କର ପେଟ ଚିରି ପକାଇଲେ । ପରେ ମରହଟ୍ଟା ସୈନ୍ୟ ହଠାତ୍ ପଠାଣସେନା ଉପରେ ପଡ଼ି ଅନେକଙ୍କୁ ହତ୍ୟା କଲେ ଏବଂ ସେମାନଙ୍କର ଜିନିସପତ୍ର ସବୁ ଲୁଟି କରି ନେଇଗଲେ ।

ବିଜାପୁର ସୁଲତାନଙ୍କୁ ଏପରି ପରାସ୍ତ କରି ସିବାଜୀ ଅଧିକ ପ୍ରତାପଶାଳୀ ହୋଇ ଉଠିଲେ । ପରେ ସେ ମୋଗଲ ସାମ୍ରାଜ୍ୟରେ ପ୍ରବେଶାରମ୍ଭ କଲେ । ଏଣୁ ଔରଂଜେବ ଶାଇସ୍ତାଖାଁଙ୍କୁ ସସୈନ୍ୟ ଦକ୍ଷିଣକୁ ପଠାଇଲେ । ଶାଇସ୍ତାଖାଁ ସୈନ୍ୟସଙ୍ଗେ ପୂନାରେ ଥିବା-ବେଳେ ଦିନେ ସିବାଜୀ ଖାଁଙ୍କ ତମ୍ବୁ ମଧ୍ୟରେ ପଶି ତାଙ୍କୁ ହଠାତ୍ ଆକ୍ରମଣ କଲେ । ଖାଁ ପ୍ରାଣ ଭୟରେ ପଳାଇବା ବେଳେ ସିବାଜୀଙ୍କ ଖଡ୍ଗାଘାତରେ ତାଙ୍କର କେତେଗୋଟି ଆଙ୍ଗୁଠି କଟିଗଲା । ଔରଂଜେବ ଜୟପୁର ରାଜା ଜୟସିଂହଙ୍କୁ ପଠାଇଲେ । ସେ ବି ସିବାଜୀଙ୍କ ହାତରେ ପୂର୍ଣ୍ଣ ପରାଭବ ପାଇଲେ ।

୧୬୬୪ ସାଲରେ ସିବାଜୀ ସୁରାଟ ବନ୍ଦର ଲୁଣ୍ଠନ କରି ବହୁ ଧନ ସମ୍ପଦ ଧରି ଚାଲିଗଲେ । ଜୟସିଂହ ସିବାଜୀଙ୍କ ସଙ୍ଗେ କପଟସ୍ନେହ ଆରମ୍ଭ କଲେ । ସିବାଜୀ ଜୟସିଂହଙ୍କ କପଟ ପରାମର୍ଶରେ ଭୁଲି ତାଙ୍କ ସଙ୍ଗେ ଆଗ୍ରାକୁ ଗଲେ—ଉଦ୍ଦେଶ୍ୟ, ସମ୍ରାଟଙ୍କ ସହିତ ଦେଖା କରିବା । କିନ୍ତୁ ଔରଂଜେବ ତାଙ୍କୁ ସେଠାରେ ବନ୍ଦୀ କରି ରଖିଲେ । ସିବାଜୀ କାରାଗାରର ଚାକରମାନଙ୍କୁ ହାତକରି ସେଠାରୁ କୌଶଳରେ, ଗୁପ୍ତ-ଭାବରେ ଫିଟି ଆସିଲେ । ଏପରି ଜୟସିଂହଙ୍କ ବୁଦ୍ଧି ଏବଂ ଔରଂଜେବଙ୍କ

ପରାକ୍ରମ ସିବାଜୀଙ୍କ ସ୍ୱତୁର୍ଯ୍ୟ ନିକଟରେ ଏକାବେଳକେ ପରାସ୍ତ ହୋଇ ପଡ଼ିଲା । ୧୬୭୪ ସାଲରେ ସିବାଜୀ ରାୟଗଡ଼ ଦୁର୍ଗରେ ଛତ୍ରପତି ରୂପେ ଅଭିଷିକ୍ତ ହେଲେ ।

୧୬୭୭ ସାଲରେ ସିବାଜୀ ଦକ୍ଷିଣ ଜିଣିବାକୁ ବାହାରିଲେ । ସେ ସେଠାରେ ଗୋଲକୋଣ୍ଡା ସୁଲତାନଙ୍କୁ ପରାସ୍ତ କଲେ; ଜିଂଜିଦୁର୍ଗ, ବେଲୁର, ତାଞ୍ଜୋରର ଅଧେ, ହୁବଲି ଓ କର୍ଣ୍ଣାଟ ଅଧିକାର କରି ନେଲେ । ସେତେବେଳେ ଔରଂଜେବ ଅଫଗାନସ୍ଥାନ ଯୁଦ୍ଧରେ ବ୍ୟସ୍ତ ଥିଲେ । ୧୬୮୦ ସାଲରେ ଛତ୍ରପତି ସିବାଜୀଙ୍କର ମୃତ୍ୟୁ ଘଟିଲା ।

ସିବାଜୀଙ୍କ ରାଜ୍ୟ ଯୁଦ୍ଧରେହିଁ ସ୍ଥାପିତ ହୋଇଥିଲା । ତାଙ୍କ ଅଧୀନରେ ବହୁ ସୈନିକ ଥିଲେ । ସେନା ଚଳାଇବା ପାଇଁ ଅନେକ କର୍ମଚାରୀ ନିଯୁକ୍ତ ହୋଇଥିଲେ । ୧୦ ଜଣ ସୈନିକ ଉପରେ ଜଣେ ନାୟକ, ତା ଉପରେ ହାବିଲ୍‌ଦାର, ଜାମ୍ଲାଦାର ରହୁଥିଲେ । ପ୍ରତ୍ୟେକ ବଡ଼ ବିଭାଗରେ ୫୦୦୦ ସୈନିକ । ତାଙ୍କ ସୈନ୍ୟ ମଧ୍ୟରେ ଅନେକ ଅଶ୍ୱାରୋହୀ ଥିଲେ । କେତେଜଣ ଅଶ୍ୱାରୋହୀଙ୍କୁ ସିବାଜି ଘୋଡ଼ା ଯୋଗାଉଥାନ୍ତି, ଅନ୍ୟମାନେ ନିଜ ନିଜର ଘୋଡ଼ା ଆଣୁଥାନ୍ତି । ସିପାହୀମାନେ ରୀତିମତ ଦରମା ପାଉଥିଲେ ।

ଲୁଣ୍ଠନଦ୍ୱାରା ସିବାଜୀ ବହୁଧନ ସଂଗ୍ରହ କରିଥିଲେ । ଆରବ ଓ ମୋଗଲ ଜାହାଜ ଲୁଟିକରିବା ନିମନ୍ତେ ସେ ନିଜର କେତେଗୋଟି ଜାହାଜ ରଖିଥିଲେ । ଅଧିକୃତ ରାଜ୍ୟରୁ ଚଉଠ ଓ ସରଦେଶମୁଖୀ ନାମରେ ଦୁଇ ରକମ କର ଅଦାୟ କରା ଯାଉଥିଲା । ସିବାଜୀଙ୍କ ଅଧୀନରେ ପୁନା, କୋଙ୍କାନ୍, ବେଲୁର, ତାଞ୍ଜୋର ଇତ୍ୟାଦି ପ୍ରଦେଶ ଥିଲା ।

ସିବାଜୀ ରାଜ୍ୟ ପରିଚାଳନା ପାଇଁ ଆଠଜଣ ମନ୍ତ୍ରୀ ନିଯୁକ୍ତ କରିଥିଲେ । ପ୍ରଧାନ ମନ୍ତ୍ରିଙ୍କ ଉପାଧି 'ପେଶବା' । ଭିନ୍ନ ଭିନ୍ନ ମନ୍ତ୍ରୀ ବିଭିନ୍ନ ରାଜକାର୍ଯ୍ୟ ବୁଝୁଥିଲେ । ସେମାନେ ଯୁଦ୍ଧରେ ବ୍ୟାପୃତ ଥିବାବେଳେ, ସେମାନଙ୍କ ସହକାରୀମାନେ ସକଳ କାର୍ଯ୍ୟ ବୁଝୁଥାନ୍ତି । ପ୍ରତ୍ୟେକ ମନ୍ତ୍ରିର ଅଭିଯୋଗାଦି ପଞ୍ଚାୟତଦ୍ୱାରା ନିଷ୍ପତ୍ତି କରା ହେଉଥିଲା ।

'ମାତୃବତ୍ ପର ଦାରେଷୁ'—ସିବାଜୀ ଏହି ନୀତିଟି ଅକ୍ଷରେ ଅକ୍ଷରେ ପାଳନ କରୁଥିଲେ । ଏହା ତାଙ୍କର ଚରିତ୍ରର ବିଶେଷତ୍ୱ; ଯେ କୌଣସି ସ୍ତ୍ରୀକୁ ବିପଦରୁ ଉଦ୍ଧାର କରିବାକୁ ସେ ସର୍ବଦା ତତ୍ପର, ଶତ୍ରୁ ପକ୍ଷର ସ୍ତ୍ରୀମାନଙ୍କୁ ବି ଅପମାନ ଦେଉ ନ ଥିଲେ । ଶିବାଜୀ ବିଶୁଦ୍ଧ ହିନ୍ଦୁ ହେଲେହେଁ, ଇସ୍ଲାମ ଧର୍ମ ପ୍ରତି ଘୃଣା ବା ଅନାସ୍ଥା ଦେଖାଉ ନ ଥିଲେ । କୌଣସି କୋରାନ ପୁସ୍ତକ ତାଙ୍କ ହାତରେ ପଡ଼ିବା ମାତ୍ରେ, ସେ ତାହା କୌଣସି ମୁସଲମାନକୁ ଯତ୍ନ ସହିତ ଦେଇ ପକାଉ ଥିଲେ । ଏହି ଦୁଇ ପ୍ରଧାନ ଗୁଣଯୋଗେ ହିନ୍ଦୁ କାହିଁକି ପଠାଣମାନେ ସୁଦ୍ଧା ସିବାଜୀଙ୍କର ପ୍ରଶଂସା ଗାନ କରୁଥିଲେ ।

—:( * ):—

## ଔରଂଜେବଙ୍କ ଦାକ୍ଷିଣାତ୍ୟ ଅଭିଯାନ

ସିବାଜୀ ଜୀବିତ ଥିବା ଯାଏଁ ଦାକ୍ଷିଣାତ୍ୟ ଜୟ କରିବା ଔରଂଜେବଙ୍କର ନିତାନ୍ତ ଅସାଧ ହୋଇଥିଲା । ସିବାଜୀଙ୍କ ମୃତ୍ୟୁ ପରେ ସମ୍ରାଟ ପ୍ରକାଣ୍ଡ ମୋଗଲସୈନ୍ୟ ଧରି ଦାକ୍ଷିଣାତ୍ୟକୁ ଗଲେ ।

ଆଗେ କହା ଯାଇଅଛି ଯେ, ଔରଂଜେବ ସୁନ୍ନି-ଶାଖାବଲମ୍ବୀ ମୁସଲମାନ ଥିବାରୁ ସେ ଷିଆ ଶାଖାକୁ ଅତ୍ୟନ୍ତ ଘୃଣା କରୁଥିଲେ । ବିଜାପୁର ଓ ଗୋଲକୋଣ୍ଡାର ପଠାଣ ସୁଲତାନ ଦୁହେଁ ଷିଆ ଶାଖାବଲମ୍ବୀ;

ଏଣୁ ସେମାନଙ୍କୁ ଧ୍ୱଂସ କରିବା ପାଇଁ ସମ୍ରାଟ ଦୃଢ଼ସଂକଳ୍ପ । ସେତେବେଳେ ଜଣେ ନୈଷ୍ଠିକ ବ୍ରାହ୍ମଣ ଗୋଲକୋଣ୍ଡାର ମନ୍ତ୍ରୀ । ଏଣୁ ଗୋଲକୋଣ୍ଡା ଉପରେ ସମ୍ରାଟଙ୍କର ଅଧିକ ହିଂସା ରାଗ । ଏହି ଦୁଇ ରାଜ୍ୟ ଅଧିକାର କରି ପକାଇଲେ ମହାରାଷ୍ଟ୍ର ପ୍ରଦେଶ ଜୟ କରିବା ସହଜ ହେବ ବୋଲି ତାଙ୍କର ଦୃଢ଼ଧାରଣା ।

ଔରଂଜେବ ଆଗେ ବିଜାପୁର ସୁଲତାନଙ୍କୁ ପରାସ୍ତ କରି, ରାଜ୍ୟଟି ମୋଗଲ ସାମ୍ରାଜ୍ୟରେ ମିଶାଇଲେ । ପରେ ସେ ଗୋଲକୋଣ୍ଡା ଆକ୍ରମଣ କଲେ । ଗୋଲକୋଣ୍ଡା ଦୁର୍ଗ ଖୁବ୍ ଦୃଢ଼ ଓ ସୁରକ୍ଷିତ ଥିଲା—ସେଠାରେ ଅନେକ ତୋପ ରଖାଯାଇଥିଲା । ଦୁର୍ଗ ମଧ୍ୟରେ ଖାଦ୍ୟର କୌଣସି ଅଭାବ ନ ଥିଲା । ଏଣୁ ଔରଂଜେବ ପ୍ରାୟ ସାତ ମାସ କାଳ ଦୁର୍ଗ ଅବରୋଧ କରି ବିଫଳମନୋରଥ ହେଲେ । ଶେଷରେ ଦୁର୍ଗର ଜଣେ ଦ୍ୱାରପାଳଙ୍କୁ ଉତ୍କୋଚରେ ବଶ କରି ଦୁର୍ଗ ମଧ୍ୟରେ ପ୍ରବିଷ୍ଟ ହେଲେ । ଗୋଲକୋଣ୍ଡା ଏପରି ମୋଗଲ ଶାସନାଧୀନ ହେଲା ।

ପରେ ଔରଂଜେବ୍ ମରହଟ୍ଟାମାନଙ୍କ ସଙ୍ଗେ ଯୁଦ୍ଧ କଲେ । ସିବାଜୀଙ୍କ ଅଯୋଗ୍ୟ ପୁତ୍ର ସମ୍ଭାଜୀ ସେତେବେଳେ ମରହଟ୍ଟାମାନଙ୍କର ରାଜା । ସେ ବ୍ୟସନୀ ହୋଇ ରାଜକାର୍ଯ୍ୟ କିଛି ବୁଝୁ ନ ଥିଲେ, ସୁଦକ୍ଷ ମନ୍ତ୍ରିମାନେହିଁ ଶାସନ ଚଳାଉଥିଲେ । ମରହଟ୍ଟାମାନଙ୍କ ଶକ୍ତି ଏବେ ସୁଦ୍ଧା କମି ନ ଥିଲା । ଅତଏବ ଔରଂଜେବ୍ ସେମାନଙ୍କୁ ପ୍ରକାଶ ଯୁଦ୍ଧରେ ହଟାଇ ପାରିଲେ ନାହିଁ, କିନ୍ତୁ କୌଶଳରେ ସମ୍ଭାଜୀଙ୍କୁ କାରାବଦ୍ଧ କଲେ । ସେ ସମ୍ଭାଜୀଙ୍କୁ ଇସଲାମ ମତ ଗ୍ରହଣ କରିବାକୁ ବାଧ୍ୟ କଲେ, କିନ୍ତୁ ସେ ଶୁଣିଲେ ନାହିଁ । ଏଣୁ ସମ୍ରାଟଙ୍କ ଆଦେଶରେ ସମ୍ଭାଜୀଙ୍କର ଜିହ୍ୱା ଓ ମସ୍ତକ ଛେଦନ କରାଗଲା ।

ସମ୍ରାଟଙ୍କର ଏହି ଆଚରଣରେ ମରହଟ୍ଟାଜାତି ଭୟଙ୍କର କ୍ରୁଦ୍ଧ ହୋଇ ଉଠିଲେ ଏବଂ ସମ୍ଭାଜୀଙ୍କ ପୁତ୍ର ସାହୁଙ୍କୁ ରାଜପଦରେ ଅଭିଷିକ୍ତ କଲେ । କିନ୍ତୁ ସାହୁ ମଧ୍ୟ କେତେକ ଦିନ ମୋଗଲ ସମ୍ରାଟଙ୍କ ବନ୍ଦୀ ହୋଇ ରହିଲେ । ଏଣୁ ମୋଗଲ ସାମ୍ରାଜ୍ୟ ପ୍ରତି ମରହଟ୍ଟାମାନଙ୍କ ଶତ୍ରୁତା ବୃଦ୍ଧି ପାଇଲା—ସେମାନଙ୍କ ଜାତୀୟ ମମତା ଦୃଢ଼ବଦ୍ଧ ହେଲା । ବିଜାପୁର ଓ ଗୋଲକୋଣ୍ଡାର ପତନରେ ମରହଟ୍ଟାମାନଙ୍କର ଅଧିକ ସୁବିଧା ହେଲା । କାରଣ ଆଗେ ଭିନ୍ନଗୋଷ୍ଠି ଶତ୍ରୁ ସଙ୍ଗେ ଯୁଦ୍ଧ କରିବା ଦ୍ୱାରା ସେମାନଙ୍କ ବଳ ବିକ୍ଷିପ୍ତ ହୋଇ ଯାଇଥିଲା—ବର୍ତ୍ତମାନ ଏକା ଔରଂଜେବ୍ ସେମାନଙ୍କ ଶତ୍ରୁ ।

ଔରଂଜେବଙ୍କ ସୈନିକ ଓ କର୍ମଚାରୀଗଣ ବହୁଦିନ ଦାକ୍ଷିଣାତ୍ୟରେ ରହି ବିରକ୍ତ ହୋଇ ଉଠିଲେ । ସମ୍ରାଟଙ୍କ ଅନୁପସ୍ଥିତିରେ ଦିଲ୍ଲୀରେ ବିଦ୍ରୋହ ଘଟିଲା । ତାଙ୍କ ନିଜ ପୁତ୍ରମାନେହିଁ ସମ୍ରାଟଙ୍କୁ ଭୟଙ୍କର କଷ୍ଟ ଦେଲେ । ନିଜ ମୂର୍ଖତାରୁ ମୋଗଲ ସାମ୍ରାଜ୍ୟର ଦୁର୍ବଳତା ଦେଖି ଔରଂଜେବ୍ ଭଗ୍ନହୃଦୟ ହୋଇ ପଡ଼ିଲେ । ୧୭୦୭ ସାଲରେ ସେ ଅହମ୍ମଦନଗରଠାରେ ଇହଲୀଳା ଶେଷ କଲେ ।

—:o:—

## ଔରଂଜେବଙ୍କ ପରେ ମୋଗଲ ସାମ୍ରାଜ୍ୟ

ଔରଂଜେବଙ୍କ ପରେ ମୋଗଲ ସାମ୍ରାଜ୍ୟର ପତନାରମ୍ଭ ହେଲା । ତାଙ୍କର ଅତିରିକ୍ତ ଇସଲାମ-ପ୍ରୀତି ଓ ହିନ୍ଦୁ-ବିଦ୍ୱେଷ ଯୋଗୁଁ ଦେଶରେ ଅନେକେ ତାଙ୍କର ଶତ୍ରୁ ହୋଇ ଉଠିଥିଲେ । ଔରଂଜେବଙ୍କ ପୁତ୍ରମାନେ ପିତାଙ୍କ ସିଂହାସନ ନିମନ୍ତେ ପରସ୍ପର ମଧ୍ୟରେ ଯୁଦ୍ଧ କଲେ । ଶେଷରେ ମୋଜାମ୍ ଭାଇମାନଙ୍କୁ ପରାସ୍ତ କରି ବାହାଦୁର୍ ସା ନାମରେ

ଦିଲ୍ଲୀର ସମ୍ରାଟ ହେଲେ । ସେ ୧୭୦୭ ଠାରୁ ୧୭୧୨ ପର୍ଯ୍ୟନ୍ତ ରାଜତ୍ୱ କରିଥିଲେ ।

ବାହାଦୁର ସା ସାହୁଙ୍କୁ କାରାମୁକ୍ତ କରି ଦେଲେ । ସାହୁ ମୋଗଲ କାରାଗାରରେ ବନ୍ଧୁବନ ରହି ମହାରାଷ୍ଟ୍ର-ସୁଲଭ ବୀରତ୍ୱ ହରାଇ ଥିଲେ । ମହାରାଷ୍ଟ୍ର ପ୍ରଦେଶ ସାହୁଙ୍କ ମନ୍ତ୍ରୀ ବା ପେଶବାମାନଙ୍କ ପରିଚାଳନାରେ ରହିଲା । ପେଶବାମାନଙ୍କ ଶାସନରେ ମରହଟ୍ଟା ଜାତିର ପରାକ୍ରମ ବୃଦ୍ଧି ପାଇଲା ଏବଂ ତଦ୍ୱାରା ମୋଗଲ ସମ୍ରାଟମାନଙ୍କର ପ୍ରଭାବ କ୍ଷୀଣ ହେଲା ।

ବାହାଦୁରଙ୍କ ସମୟରେ ପଞ୍ଜାବର ଶିଖ ଜାତି ମଧ୍ୟ ପ୍ରତାପଶାଳୀ ହୋଇ ଉଠିଲେ । ଏହା ମୋଗଲ ସାମ୍ରାଜ୍ୟ ପତନର ଅନ୍ୟତମ କାରଣ । ବାହାଦୁରସା ତାଙ୍କ ପ୍ରଧାନ ମନ୍ତ୍ରିଙ୍କ ହାତରେ ସାମ୍ରାଜ୍ୟ ଭାର ଦେଇ ନିଶ୍ଚିନ୍ତ ରହିଲେ—ତାଙ୍କ ପରବର୍ତ୍ତୀ ସମ୍ରାଟମାନେ ବି ଏହା କଲେ । ଏଣୁ ମୋଗଲ ସାମ୍ରାଜ୍ୟ କ୍ଷୀଣରୁ କ୍ଷୀଣତର ହେବାକୁ ଲାଗିଲା ।

୧୭୧୨ ସାଲରେ ବାହାଦୁରସାଙ୍କର ମରଣ ହେଲା—ସିଂହାସନ ନିମନ୍ତେ ତାଙ୍କ ଚାରି ପୁତ୍ରଙ୍କ ମଧ୍ୟରେ ଗୋଲମାଲ ଉଠିଲା । ଶେଷରେ ଜାହାନ୍ଦର ସା ସମ୍ରାଟ ହେଲେ । ଏ ସମ୍ରାଟ ପଦର ନିତାନ୍ତ ଅନୁପଯୁକ୍ତ—ଏହାଙ୍କ ଚରିତ୍ର ବଡ଼ ଖରାପ । ସେ ୧୧ମାସ କାଳ ମାତ୍ର ରାଜତ୍ୱ କଲେ । ତାଙ୍କ ପୁତୁରା ଫରକ୍ ସାୟାର୍ ତାଙ୍କୁ ହତ୍ୟା କରି ୧୭୧୩ ସାଲରେ ଦିଲ୍ଲୀର ପ୍ରଭୁ ହେଲେ ।

ଫରକ୍ ସାୟାର୍ ଜାହାନ୍ଦର ସା ଅପେକ୍ଷା କୌଣସି ଗୁଣରେ ଅଧିକ ନ ଥିଲେ । ସେ ରାଜକାର୍ଯ୍ୟ କରିବାକୁ ଏକାନ୍ତ ଅସମର୍ଥ, ନିରର୍ଥକ ରକ୍ତପାତ କରିବାକୁ ସର୍ବଦା ତତ୍ପର । ତାଙ୍କ ଦୁର୍ବଳ ରାଜତ୍ୱରେ

ବରଲ୍କ ହୋଇ କେତେଜଣ ରାଜକର୍ମଚାରୀ ତାଙ୍କୁ ହତ୍ୟା କରି ମହମ୍ମଦସା ନାମକ ଜଣେ ରାଜପୁରୁଷଙ୍କୁ ଦିଲ୍ଲି ସିଂହାସନରେ ବସାଇଲେ । ଏହାଙ୍କ ଶାସନରେ ମୋଗଲ ସାମ୍ରାଜ୍ୟ ଅତ୍ୟନ୍ତ ଦୁର୍ବଳ ହୋଇଗଲା । ପ୍ରାଦେଶିକ ପ୍ରତିନିଧିମାନେ ନିଜ ନିଜର ସ୍ୱାଧୀନତା ଘୋଷଣା କଲେ । ଶେଷରେ ଦିଲ୍ଲୀ ନଗର ଭିନ୍ନ ମୋଗଲ ସମ୍ରାଟଙ୍କର ନିଜର ହୋଇ ଅନ୍ୟ କୌଣସି ସ୍ଥାନ ରହିଲା ନାହିଁ ।

୧୭୨୨ ସାଲରେ ମହମ୍ମଦ ସାଙ୍କ ମନ୍ତ୍ରୀ ଅସଫଜାହା ଦିଲ୍ଲୀ ତ୍ୟାଗ କରି ଦାକ୍ଷିଣାତ୍ୟକୁ ଗଲେ ଏବଂ ସେଠାରେ ମୋଗଲମାନଙ୍କ ଅଧୀନସ୍ଥ ପ୍ରଦେଶରେ ଅଧିକାରୀ ହୋଇ ରହିଲେ । ଏହାଙ୍କର ବଂଶଧରଗଣହିଁ ଆଜି କାଲି ହାଇଦରାବାଦର ନୈଜାମ୍ ହୋଇଛନ୍ତି । ଅସଫ ଜାହା ଥିଲେ ପ୍ରଥମ ନୈଜାମ୍ ।

୧୭୨୪ ସାଲରେ ଅଯୋଧ୍ୟାର ଆଉ ଜଣେ ପଠାଣ ରାଜା ତାଙ୍କର ସ୍ୱାଧୀନତା ଘୋଷଣା କଲେ । ୧୭୪୪ରେ ବଙ୍ଗ ପ୍ରତିନିଧି ଅଲିବର୍ଦ୍ଦିଖାଁ ସେଠାରେ ନବାବ ହୋଇ ଦିଲ୍ଲୀ ସମ୍ରାଟଙ୍କ ଅଧିକାରକୁ ଆଉ ମାନିଲେ ନାହିଁ । ପେଶବା ଅଧୀନସ୍ଥ ମରହଟ୍ଟାମାନେ ମୋଗଲ ସାମ୍ରାଜ୍ୟରୁ ଖଣ୍ଡେ ଖଣ୍ଡେ ଆକ୍ରମଣ କରିବାକୁ ଲାଗିଲେ ଏବଂ ହିନ୍ଦୁସ୍ଥାନର କେତେକାଂଶ ଅଧିକାର କରି ପକାଇଲେ ।

ସେତେବେଳେ ବୀରଶ୍ରେଷ୍ଠ ନାଦୀରସା ପାରସ୍ୟ ଦେଶର ରାଜା । ସେ କାବୁଲ ଅଧିକାର କରି ପଞ୍ଜାବକୁ ଆସିଲେ । ପରେ ସେ ଦିଲ୍ଲୀ ପାଖରେ ଯାଇ ଅବସ୍ଥାନ କଲେ । ତାଙ୍କୁ ତଡ଼ିଦେବା ପାଇଁ ମହମ୍ମଦ ସା ମୋଗଲ ସୈନ୍ୟ ପଠାଇଲେ । ଯୁଦ୍ଧ ହେଲା, କୋଡ଼ିଏ ହଜାର ମୋଗଲ ସିପାହୀ ମଲେ । ନାଦୀର ସା ଦିଲ୍ଲୀରେ ପ୍ରବିଷ୍ଟ ହୋଇ ଅଧିକାର ଚଳାଇଲେ । ପାରସ୍ୟ ସୈନ୍ୟ ନଗରର ପ୍ରତ୍ୟେକ ସ୍ଥାନ ଲୁଣ୍ଠନ କଲେ,

ବହୁ ଲୋକଙ୍କୁ ବଧ କଲେ, ଘର ଦ୍ୱାର କେତେ ପୋଡ଼ିପାଡ଼ି ଦେଲେ । ଶେଷରେ ମହମ୍ମଦ ସା ନାଦୀରଙ୍କୁ ପ୍ରାର୍ଥନା କରିବାରୁ, ସେ ଏହି ନିଷ୍ଠୁର କାଣ୍ଡ ବନ୍ଦ କରି ଦେଲେ । ଦିଲ୍ଲୀବାସିଗଣ ଯେ ଯାହାର ଟଙ୍କା, ସୁନା ରୁପାଦି ଆଣି ନାଦୀର ସାଙ୍କ ପାଦତଳେ ଗଦା କଲେ । ନାଦୀର ସା ମୋଗଲ ରାଜକୋଷରୁ ପ୍ରଚୁର ଧନରତ୍ନ, ସାଜାହାନ ନିର୍ମିତ ମୟୂର-ସିଂହାସନ ଇତ୍ୟାଦି ଧରି ସ୍ୱସ୍ଥାନକୁ ଫେରିଲେ । ସେ ଏତେ ଧନ ନେଇଥିଲେ ଯେ, ଏକ ବର୍ଷ ଯାଏଁ ସେ ପାରସ୍ୟ ପ୍ରଜାଙ୍କଠାରୁ କର ସଂଗ୍ରହ କଲେ ନାହିଁ ।

୧୭୪୮ ସାଲରେ ଅହମ୍ମଦ ସା ଦୁରାନି ନାମକ ଜଣେ ପଠାଣ ରାଜା କାବୁଲ ଜିଣି ଭାରତକୁ ଆସିଲେ । ଏବଂ ପଞ୍ଜାବ ଅଧିକାର କଲେ । ସେହି ବର୍ଷ ମହମ୍ମଦ ସା ପ୍ରାଣତ୍ୟାଗ କଲେ । ତାଙ୍କ ମୃତ୍ୟୁ ପରେ ମୋଗଲ ସମ୍ରାଟମାନଙ୍କ ପ୍ରଭାବ, କ୍ଷମତା ଆଦୌ ରହିଲା ନାହିଁ— ମୋଗଲ ସାମ୍ରାଜ୍ୟ ଭାଙ୍ଗି ଗଲା ।

—:o:—

## ମରହଟ୍ଟା ଶକ୍ତି-ବୃଦ୍ଧି

ସାହୁ ଔରଂଜେବଙ୍କ ଦ୍ୱାରା ବନ୍ଦୀ କରା ଯାଇ ଥିବା କଥା ଏଥି-ପୂର୍ବେ କହା ଯାଇ ଅଛି । ତାଙ୍କ ଅନୁପସ୍ଥିତିରେ ତାରାବାଈ ମହାରାଷ୍ଟ୍ର ଦେଶର ରାଣୀ ଥିଲେ । ବାହାଦୁର ସାଙ୍କ ଦ୍ୱାରା କାରାମୁକ୍ତ ହେବା ପରେ ସାହୁ ପୁଣି ତାଙ୍କ ରାଜ୍ୟର ରାଜା ହେଲେ । ତାଙ୍କର ବିଖ୍ୟାତ ସୁଦକ୍ଷ ବ୍ରାହ୍ମଣ ମନ୍ତ୍ରୀ ବା ପେଶବା ତାଙ୍କ ନାମରେ ରାଜ କାର୍ଯ୍ୟ ଚଳାଉ ଥାନ୍ତି, ଏହା ମଧ୍ୟ ପଢ଼ିଛ ।

ସାହୁଙ୍କ ସମୟରେ ବାଲାଜି ବିଶ୍ୱନାଥ ମହାରାଷ୍ଟ୍ର ପ୍ରଦେଶରେ ପେଶବା । ସେ ରାଜ୍ୟଶାସନରେ ନିପୁଣ । ସେ ନିଜ ରାଜ୍ୟକୁ ସୁଦୃଢ଼

କରି ପାରି ଥିଲେ । ଏବଂ ନିୟମିତଭାବରେ ଉତ୍ତର ଓ ପୂର୍ବଦେଶମୁଖୀ ଆଦାୟ କରୁଥିଲେ । ସେ ମହମ୍ମଦ ଶାଙ୍କ ସହିତ ଗୋଟିଏ ସନ୍ଧିରେ ସ୍ଥିର କଲେ ଯେ, ମରହଟ୍ଟାମାନେ ଦାକ୍ଷିଣାତ୍ୟରୁ ଉତ୍ତର ଓ ପୂର୍ବଦେଶମୁଖୀ ସଂଗ୍ରହ କରିବେ । ସେ ୧୭୨୦ ସାଲରେ ପ୍ରାଣତ୍ୟାଗ କଲେ ।

ବାଲାଜି ବିଶ୍ୱନାଥଙ୍କ ପରେ ତାଙ୍କ ପୁଅ ବାଜି ରାଓ ପେଶବା ହେଲେ । ଏହିପରି ପୁରୁଷାନୁକ୍ରମେ ପେଶବା ଉପାଧି ଚାଲିଲା । ସେ ମରହଟ୍ଟା ସେନାର ବହୁତ ସଂସ୍କାର କଲେ । ହିନ୍ଦୁସ୍ତାନରେ ମହାରାଷ୍ଟ୍ର ଆଧିପତ୍ୟ ବିସ୍ତାର କରିବା ପାଇଁ ତାଙ୍କର ଖୁବ୍ ଚେଷ୍ଟା ଥିଲା । ସେ ହାଇଦରାବାଦର ପ୍ରଥମ ନିଜାମଙ୍କ ପ୍ରଭାବ କମାଇ ଦେବାକୁ ଚେଷ୍ଟା କଲେ । ୧୭୩୮ ରେ ଉଭୟଙ୍କର ମଧ୍ୟରେ ସନ୍ଧି ସ୍ଥାପିତ ହେଲା ।

ପେଶବାଙ୍କର ଭିନ୍ନ ଭିନ୍ନ କର୍ମଚାରୀଗଣ ବିଭିନ୍ନ ପ୍ରଦେଶ ଜିଣି ସେଠାରେ ନିଜ ନିଜର ରାଜ୍ୟ ଗଠନ କଲେ । ଗାଇକୁଆଡ଼ ଗୁଜରାଟରେ ତାଙ୍କ ରାଜ୍ୟ ସ୍ଥାପନ କଲେ—ବରୋଡ଼ା ତାଙ୍କର ରାଜଧାନୀ । ମଧ୍ୟ-ଭାରତ ବା ବିରାରରେ ମାଳବ ହେଲା ହୋଲ୍‌କାରଙ୍କ ରାଜ୍ୟ—ରାଜଧାନୀ ହେଲା ଇନ୍ଦୋର । ସିନ୍ଧିଆ ଗୁଆଲିଅରରେ ବୁନ୍ଦେଲଖଣ୍ଡର ରାଜା ହୋଇ ଗଙ୍ଗାନଦୀ ପର୍ଯ୍ୟନ୍ତ ତାଙ୍କ ରାଜ୍ୟ ବିସ୍ତାର କଲେ । ଭୋନ୍‌ସଲେ ନାଗପୁରର ଶାସକ ହେଲେ ।

ଏପରି ମରହଟ୍ଟାମାନଙ୍କ ପ୍ରଭାବ ଭାରତର ଅଧିକାଂଶ ପ୍ରଦେଶରେ ବ୍ୟାପ୍ତ ହେଲା । ସେମାନଙ୍କ ବିକ୍ରମ ଲୁଣ୍ଠନାଦି ଦୁଷ୍ଟ କାମ ଯୋଗୁଁ ସେହି ସମୟରେ ଭାରତବାସିମାନେ ମରହଟ୍ଟା ନାମ ଶୁଣିବା ମାତ୍ରେ ଭୟରେ କମ୍ପୁଥିଲେ ।

୧୭୪୦ ସାଲରେ ବାଜିରାଓ ମଲେ ଏବଂ ତାଙ୍କ ଜ୍ୟେଷ୍ଠପୁତ୍ର ବାଲାଜି ବାଜିରାଓ ପେଶବା ପଦ ପ୍ରାପ୍ତ ହେଲେ । ଏହାଙ୍କ ସମ୍ବନ୍ଧରେ ପର ଅଧ୍ୟାୟରେ କେତେକ ବିଷୟ ଲେଖାଯିବ ।

—···(✻)···—

## ତୃତୀୟ ପାନିପଥ ଯୁଦ୍ଧ

ବାଲାଜି ବାଜିରାଓ ପେଶବା ହେଲା ବେଳକୁ ମହାରାଷ୍ଟ୍ର ରାଜାଙ୍କର ଆଉ କିଛି କ୍ଷମତା ନ ଥିଲା । ପେଶବାହିଁ ରାଜ୍ୟର ସର୍ବେସର୍ବା । ପୁନା ତାଙ୍କର ରାଜଧାନୀ ହେଲା ଏବଂ ରାଜା ସତାରା ନଗରରେ ବାସ କରିବାକୁ ଲାଗିଲେ ।

ବାଲାଜି ବାଜିରାଓଙ୍କ ଭାଇ ରଘୁଜୀ ଗୋଟିଏ ଯୁଦ୍ଧରେ ବଙ୍ଗଳା ହରାଇ କଟକ ଜିଲ୍ଲା ଅଧିକାର କରି ନେଲେ । କଟକ ସେତେବେଳେ ବଙ୍ଗ ନବାବଙ୍କ ଅଧୀନରେ ଥିଲା । ୧୭୫୮ ସାଲରେ ସେ ପଞ୍ଜାବକୁ ଯାଇ ଲାହୋର ଆକ୍ରମଣ କଲେ । ସେତେବେଳେ ପଞ୍ଜାବ ଅଫଗାନିସ୍ଥାନର ରାଜା ଅହମ୍ମଦ ସା ଦୁରାନିଙ୍କ ଶାସନାଧୀନ ଥିଲା । ଦୁରାନି ୧୭୫୯ ସାଲରେ ପଞ୍ଜାବକୁ ଆସି ସେଠାରୁ ମରହଟ୍ଟାମାନଙ୍କୁ ତଡ଼ି ଦେଲେ । ସେଥିରେ କିନ୍ତୁ ମରହଟ୍ଟାମାନଙ୍କର ବେଶୀ କ୍ଷତି ହୋଇ ନ ଥିଲା ।

ବାଲାଜି ବାଜିରାଓଙ୍କର ସେନାପତି ସଦାଶିବ । ସେ ଖୁବ୍ ଚତୁର ଓ ଯୁଦ୍ଧନିପୁଣ । ତାଙ୍କ ଅଧୀନରେ ବେତନଭୋଗୀ ଲକ୍ଷାଧିକ ସୈନ୍ୟ ଶିକ୍ଷିତ ହୋଇଥିଲେ । ସେ ୧୭୬୦ ସାଲରେ ବିପୁଳ ସେନା ସଙ୍ଗେ ଧରି ଅହମ୍ମଦ ସା ଦୁରାନିଙ୍କ ବିରୁଦ୍ଧରେ ଅଗ୍ରସର ହେଲେ । ତାଙ୍କ ସହିତ ହୋଲ୍‌କାର, ଗାଇକୁଆଡ଼ ପ୍ରଭୃତି ରାଜାମାନେ ମଧ୍ୟ ନିଜ ନିଜର ସୈନ୍ୟ ଧରି ଚାଲିଲେ । ଏହି ସମ୍ମିଳିତ ମହାରାଷ୍ଟ୍ର ସୈନ୍ୟ ସଙ୍ଗେ ରାଜପୁତ ସେନା

ବ ଯୋଗ ଦେଲା; କାରଣ ଦୁରାନୀ ବିଦେଶୀ ଓ ବିଧର୍ମୀ । ରୋହିଲାମାନେ ଦୁରାନୀଙ୍କୁ ସାହାଯ୍ୟ କଲେ ।

ଉଭୟ ପକ୍ଷ ମଧ୍ୟରେ ତୁମୁଳ ସଂଗ୍ରାମ ହେଲା । ଏହି ଯୁଦ୍ଧଭୂମିର ନାମ ପାନିପଥ । ଏହାକୁ ତୃତୀୟ ପାନିପଥ ଯୁଦ୍ଧ କାହିଁକି କହନ୍ତି ? ଥରେ ଏହି ସ୍ଥାନରେ ବାବର ଇବ୍ରାହିମ ଲୋଦୀଙ୍କୁ ପରାସ୍ତ କରିଥିଲେ । ୨ୟ ପାନିପଥ ଯୁଦ୍ଧରେ ଅକବର ହେମୁଙ୍କୁ ହରାଇଥିଲେ । ସେହି ସ୍ଥାନରେ ବର୍ତ୍ତମାନ ପୁଣି ଲଢ଼େଇ ହେଲା ।

ପ୍ରଥମରେ ମରହଟ୍ଟାମାନେ ଖୁବ୍ ସାହସ ସହିତ ଲଢିଲେ । କିନ୍ତୁ ଦେଖୁଁ ଦେଖୁଁ ପେଶୱାଙ୍କ ପୁତ୍ର ଯୁଦ୍ଧକ୍ଷେତ୍ରରେ ଆଘାତ ପାଇ ଅଶ୍ୱ ପୃଷ୍ଠରୁ ଖସି ପଡ଼ିଲେ । ଏହି ସାମାନ୍ୟ ଘଟଣାରେ ମରହଟ୍ଟାମାନେ ଧୈର୍ଯ୍ୟଚ୍ୟୁତ ହୋଇ ବିପର୍ଯ୍ୟସ୍ତ ଭାବରେ ଧାଇଁବାକୁ ଲାଗିଲେ । ଅହମଦଙ୍କ ସୈନ୍ୟ ପଳାତକମାନଙ୍କ ପଛେ ପଛେ ଗୋଡ଼ାଇ ଯାଇ ସେମାନଙ୍କୁ ବିନଷ୍ଟ କରି ପକାଇଲେ । ରାଜପୁତ ସୈନିକମାନେ କମାରୁ ଯୁଦ୍ଧ କରି ନାହାନ୍ତି । ହୋଲ୍କାର, ସିନ୍ଧିଆ ପ୍ରଭୃତି ରାଜାମାନେ ପ୍ରାଣଭୟରେ ସ୍ୱ ସ୍ୱ ରାଜ୍ୟକୁ ପଳାୟନ କଲେ; ଅହମ୍ମଦ ଶା ଜୟୀ ହେଲେ ।

ଏହି ଯୁଦ୍ଧରେ ଅନେକ ମରହଟ୍ଟା ସୈନ୍ୟ ଓ ସେନାପତି ଜୀବନ ହରାଇଲେ । ପେଶୱାଙ୍କ ପୁତ୍ର ଓ ସେନାପତି ସଦାଶିବ ନିହତ ହେଲେ । ଏହି ଦୁଃସମ୍ବାଦ ଶ୍ରବଣରେ ବାଲାଜୀରାଓଙ୍କ ହୃଦୟ ବିଦୀର୍ଣ୍ଣ ହୋଇଗଲା— ତାଙ୍କ ପ୍ରାଣବାୟୁ ଉଡ଼ିଗଲା । ତୃତୀୟ ପାନିପଥ ଯୁଦ୍ଧରେ ପରାଜିତ ହୋଇ ମରହଟ୍ଟା ଜାତିର ବଳ ଭାଙ୍ଗିଗଲା ।



## ମୋଗଲ ସାମ୍ରାଜ୍ୟ ପତନର କାରଣ

ବାବର ଭାରତରେ ମୋଗଲ ସାମ୍ରାଜ୍ୟ ସ୍ଥାପନ କଲେ । ଅକବର ଏହି ସାମ୍ରାଜ୍ୟର ପ୍ରସାର ଓ ପ୍ରଭାବ ଅନେକ ପରିମାଣରେ ବଢ଼ାଇଲେ । ହିନ୍ଦୁଜାତି ପ୍ରତି ତାଙ୍କର ସଦ୍‌ବ୍ୟବହାର ଏହି ଉନ୍ନତିର କାରଣ, ହିନ୍ଦୁ ମୁସଲମାନ ଏକତାହିଁ ଏହି ଉନ୍ନତିର ମୂଳ । ରାଜପୁତ୍‌ମାନଙ୍କର ବୀରତ୍ୱ ମୋଗଲ ସମ୍ରାଟଙ୍କ ବିରୁଦ୍ଧରେ ବ୍ୟବହୃତ ନ ହୋଇ ତାଙ୍କ ଉପକାରରେ ଲାଗିଲା ।

ଜାହାଙ୍ଗୀର ଅତି ବିଳାସପ୍ରିୟ । କିନ୍ତୁ ସେ ଅକବରଙ୍କ ରାଜନୀତି-ପ୍ରଣାଳୀ ପ୍ରୟୋଗ କରିବାରୁ, ତାଙ୍କ ବିଳାସ ଯୋଗେ ମୋଗଲ ସାମ୍ରାଜ୍ୟର କୌଣସି ଅନିଷ୍ଟ ଘଟିଲା ନାହିଁ ।

ସାଜାହାନ ସମ୍ରାଟ ଥିବାବେଳେ ସାମ୍ରାଜ୍ୟ ମଧ୍ୟରେ ଶାନ୍ତି ବିରାଜିତ ଥିଲା, ରାଜକୋଷ ଧନରତ୍ନରେ ପୂର୍ଣ୍ଣ ଥିଲା ।

ବୁଦ୍ଧି, କ୍ଷମତା ଓ ବିକ୍ରମରେ ଔରଂଜେବ୍ ପୂର୍ବବର୍ତ୍ତୀ ସମ୍ରାଟମାନଙ୍କ ଅପେକ୍ଷା ନିକୃଷ୍ଟ ନ ଥିଲେ । କିନ୍ତୁ ତାଙ୍କର ହିନ୍ଦୁଦ୍ୱେଷ ମୋଗଲ ସାମ୍ରାଜ୍ୟର ପତନ ଘଟାଇଲା । ସେ ପୁନର୍ବାର ଜେଜିଆ କର ସଂଗ୍ରହ କଲେ । ହିନ୍ଦୁ ଦେବମନ୍ଦିର ଧ୍ୱଂସ କଲେ ଏବଂ ରାଜପୁତ ଓ ମରହଟ୍ଟା-ମାନଙ୍କ ବିପକ୍ଷରେ ଯୁଦ୍ଧ ଚଳାଇ ସେମାନଙ୍କ ଶତ୍ରୁତା ଅର୍ଜନ କଲେ । ତାଙ୍କର ଏହି ଦୁର୍ବଳତା ଯୋଗୁଁ ମୋଗଲ ସାମ୍ରାଜ୍ୟ ବିଭିନ୍ନ ସ୍ୱତନ୍ତ୍ର ରାଜ୍ୟରେ ବିଭକ୍ତ ହୋଇଗଲା । ଏହି ସୁଯୋଗ ପାଇ ବିଦେଶୀ ଶତ୍ରୁମାନେ ଆସି ରାଜ୍ୟ ଆକ୍ରମଣ କଲେ । ତାଙ୍କ ପରେ ନାଦୀରସା ଦିଲ୍ଲୀକୁ ଆସି ବହୁ ଧନ ଲୁଟି କରି ନେଇ ଗଲେ ।

ବାବରଙ୍କ ସଙ୍ଗେ ଯେଉଁ ମୋଗଲ ସୈନ୍ୟ ଆମ ଦେଶକୁ ଆସିଥିଲେ, ସେମାନେ ଏଠାରେ ଧନ-ମଦ ଓ ଭୋଗ ବିଳାସରେ ମାତି କ୍ରମେ ଆଲସ୍ୟପରାୟଣ ଓ ହୀନବଳ ହୋଇ ପଡ଼ିଲେ । ଔରଂଜେବ, ବିଜାପୁର ଓ ଗୋଲକୋଣ୍ଡା ରାଜ୍ୟ ଜୟ କଲେ । ଏହି ବିଜୟ ଦ୍ୱାରା ମୋଗଲ ସାମ୍ରାଜ୍ୟର ଯଥ ଛଡ଼ା ଲାଭ ହେଲା ନାହିଁ । ଏ ଦୁଇଟି ପଠାଣ ରାଜ୍ୟ ପ୍ରବଳ ଥିବାରୁ, ମରହଟ୍ଟାମାନେ ସେମାନଙ୍କ ରାଜ୍ୟ ବିସ୍ତାର କରି ପାରି ନ ଥିଲେ । ଜନ୍ତୁ ଏ ଦୁଇ ରାଜ୍ୟର ପତନରେ ମରହଟ୍ଟାମାନଙ୍କ ରାଜ୍ୟ-ପ୍ରସାର ପନ୍ଥା ସୁଗମ ହୋଇଗଲା । ଶତ୍ରୁ ବିନାଶରେ ମରହଟ୍ଟାମାନେ ଦ୍ୱିଗୁଣ ଉତ୍ସାହ ଓ ସୁବିଧା ପାଇ ସେମାନଙ୍କର ସମସ୍ତ ଶକ୍ତି ମୋଗଲ ସାମ୍ରାଜ୍ୟ ବିରୁଦ୍ଧରେ ନିୟୋଗ କଲେ ।

ବାୟବ୍ୟ କୋଣରୁ ତ ବିଦେଶୀ ଶତ୍ରୁମାନେ ଆସି ଦେଶ ଲୁଣ୍ଠନ କଲେ । ଆରବ ସାଗର ଦିଗରୁ ଇଉରୋପୀୟମାନେ ଆସି ଭାରତରେ ସେମାନଙ୍କର ବାଣିଜ୍ୟ ବିସ୍ତାର କରିବାକୁ ଲାଗିଲେ । ସେମାନେ କ୍ରମେ ରାଜ୍ୟ ପରେ ରାଜ୍ୟ ଜିଣିଲେ । ଶେଷରେ ସମସ୍ତ ଭାରତ ଇଂରେଜମାନଙ୍କ ହାତକୁ ଆସିଲା ।

୧୭୬୧ ସାଲ ପର୍ଯ୍ୟନ୍ତ ମୋଗଲ ସାମ୍ରାଜ୍ୟର ଅଳ୍ପ କିଛି ଶକ୍ତି ଥିଲା । ତୃତୀୟ ପାନିପଥ ଯୁଦ୍ଧରେ ଅହମ୍ମଦ ସାହାର ଜୟ ହେଲା । ତା'ପରେ ମୋଗଲ ସମ୍ରାଟମାନଙ୍କର ସମସ୍ତ ଶକ୍ତି ଚୂର୍ଣ୍ଣ ହୋଇ ପଡ଼ିଲା । କର୍ପୂର ଉଡ଼ିଯାଇ କନା ଖଣ୍ଡିକ ମାତ୍ର ବାକି ରହିବା ଭଳି, ସକଳ ବିଭବ, ପ୍ରଭାବ ଓ ଗୌରବ ହରାଇ ଅନେକ ଦିନ ଯାଏଁ କେବଳ ସମ୍ରାଟ ପଦଟି ରହିଲା । ଷା ଆଲମ୍ ମୋଗଲ ବଂଶର ଶେଷ ସମ୍ରାଟ ।

—:( * ):—

## ଶା ଆଲମ୍

ତୃତୀୟ ପାନିପଥ ଯୁଦ୍ଧ ପରେ ଶା ଆଲମ୍ ଦିଲ୍ଲୀଗାଦିରେ ବସିଲେ । ସେ ଏକ ଦିଗରେ ଅହମ୍ମଦ ଶା ଦୁରାନି, ଅନ୍ୟ ଦିଗରେ ମରହଟ୍ଟାଜାତି, ଏପରି ଶତ୍ରୁ ମଧ୍ୟରେ ପଡ଼ି ନିରୁପାୟ ହେଲେ । ସେହି ସମୟରେ ଇଂରେଜ ବଣିକଦଳ ଦାକ୍ଷିଣାତ୍ୟ ଓ ବଙ୍ଗଳାରେ ସେମାନଙ୍କ ରାଜତ୍ୱ ଆରମ୍ଭ କରିଥାନ୍ତି । ଶା ଆଲମ୍ ମରହଟ୍ଟାମାନଙ୍କ ହାତରୁ ରକ୍ଷା ପାଇବା ପାଇଁ କ୍ଷମତାଶାଳୀ ଇଂରେଜମାନଙ୍କର ଶରଣପ୍ରାର୍ଥୀ ହେଲେ । ଗୋଟିଏ ସରତରେ ଇଂରେଜମାନେ ସମ୍ରାଟଙ୍କର ପକ୍ଷ ଧରିଲେ । ସରତ ଅନୁସାରେ ଶା ଆଲମ୍ ଇଂରେଜମାନଙ୍କୁ ବଙ୍ଗଳାର ଅଧିକାର ଦେଇ ପକାଇବାକୁ ରାଜି ହେଲେ । ତା ବଦଳରେ ଇଂରେଜମାନେ ସମ୍ରାଟଙ୍କୁ ଅଲ୍ଲାହାବାଦ ଓ କୋରା ଜିଲା ଏବଂ ବାର୍ଷିକ ୨୬ ଲକ୍ଷ ଟଙ୍କା ଦେବାକୁ ସମ୍ମତ ହେଲେ । ଶେଷରେ ଶା ଆଲମ୍ ଇଂରେଜମାନଙ୍କ ବାହୁ-ଛାୟାତଳେ ବାର୍ଷିକ ପଚିଶଲକ୍ଷ ଟଙ୍କା ମାତ୍ର ବଉଜ ଖାଇ ଆଲାହାବାଦରେ ବାସ କଲେ । ବର୍ତ୍ତମାନ ସେ ଜଣେ ରାଜ୍ୟହୀନ ରାଜା ।

ତୃତୀୟ ପାନିପଥ ଯୁଦ୍ଧର ପ୍ରାୟ ଦଶ ବର୍ଷ ପରେ ମରହଟ୍ଟା ପେଶବାମାନଙ୍କର ବଳ, ପ୍ରଭାବ ଏକାବେଳକେ ଲୋପ ପାଇଲା । ସେତେବେଳେ କେତେକଜଣ ମରହଟ୍ଟା ସର୍ଦ୍ଦାର ମାତ୍ର ଶକ୍ତିଶାଳୀ ଥିଲେ । ମହାଦାଜୀ ସିନ୍ଧିଆ ଏଭଳି ସର୍ଦ୍ଦାରମାନଙ୍କ ମଧ୍ୟରେ ସର୍ବଶ୍ରେଷ୍ଠ, ମହାକ୍ଷମତାପନ୍ନ ଥିଲେ । ସେହି ସମୟରେ ତାଙ୍କର ଉପାଧି ଥିଲା 'ମହାରାଜ' । ରାଜପୁତାନାର ସକଳ ରାଜପୁତ ରାଜା ତାଙ୍କୁ ଚଉଠ ଦେଉଥାନ୍ତି ।

ଶା ଆଲମଙ୍କୁ ମହାରାଜା ସିନ୍ଧିଆ କହି ପଠାଇଲେ ଯେ, ସେ ଅଲ୍ଲାହାବାଦ ଛାଡ଼ି ଦିଲ୍ଲୀର ମୋଗଲ ସିଂହାସନରେ ବସନ୍ତୁ । ସେ ଆଲମଙ୍କୁ ଆଶ୍ରୟ ଦେବାକୁ ଅଙ୍ଗୀକାର କଲେ । ଶା ଆଲମ ସିନ୍ଧିଆଙ୍କ କଥାରେ ଏକାବେଳକେ ଭୁଲିଗଲେ, ତାଙ୍କ ମନରେ ଲୋଭ ପଶିଲା । ସେ ଇଂରେଜମାନଙ୍କର ବିନାନୁମତିରେ ଅଲ୍ଲାହାବାଦ ଛାଡ଼ି ଦିଲ୍ଲୀରେ ଯାଇ ଅଧିକାର ଆରମ୍ଭ କଲେ । କିନ୍ତୁ ଫଳ ହେଲା କଣ ? ଇଂରେଜ-ମାନେ କ୍ରୁଦ୍ଧ ହୋଇ ଶା ଆଲମ୍‌ଙ୍କର ବାର୍ଷିକ ବଉଜ କାଟିଦେଲେ ।



ଅନେକ ବର୍ଷଯାଏଁ ଶା ଆଲମ୍ ମହାରାଜା ସିନ୍ଧିଆଙ୍କ ହାତ ମୁଠିରେ ବନ୍ଦୀ ଭଳି ରହିଲେ ଏବଂ ସିନ୍ଧିଆ ଦିଲ୍ଲୀ ଓ ଆଗ୍ରାରେ ଶାସନ ଚଳାଇବାକୁ ଲାଗିଲେ । ଯେବେ ସିନ୍ଧିଆ କୌଣସି ଏକ ଯୁଦ୍ଧରେ

କାର୍ଯ୍ୟରେ ନିଜ ରାଜଧାନୀ ଛାଡ଼ି ଗୁଆଲିଅରକୁ ଚାଲି ଯାଇଥିଲେ, ଏପରି ସମୟରେ ଜଣେ ଅଫଗାନ୍ ସର୍ଦ୍ଦାର ହଠାତ୍ ଦିଲ୍ଲୀରେ ପ୍ରବେଶ କରି ରାଜଭବନଟି ଲୁଟ କରି ଦେଲା ଏବଂ ବିଶ୍ୱାସ କରାଇ ବୃଦ୍ଧ ଶା ଆଲମ-ଙ୍କର ଚକ୍ଷୁ ଦୁଇଟି ନଷ୍ଟ କରି ପକାଇଲା । ଏହି ସମ୍ବାଦ ପାଇବା ମାତ୍ରେ ମହାଦାଜୀ ସିନ୍ଧିଆ ଦିଲ୍ଲୀକୁ ବାହୁଡ଼ି ସେହି ଦୁଷ୍ଟ ଅଫଗାନସର୍ଦ୍ଦାରକୁ ବଧ କଲେ, କିନ୍ତୁ ଆଲମ୍ ଅନ୍ଧ ହୋଇ ରହିଲେ ।

୧୮୦୩ ସାଲରେ ଇଂରେଜମାନେ ଦିଲ୍ଲୀ ଅଧିକାର କରିନେଲେ ଏବଂ ଦେଖିଲେ ଯେ, ବୃଦ୍ଧ ଚକ୍ଷୁହୀନ ଶା ଆଲମ ମରହଟ୍ଟା ହାତରେ ବନ୍ଦୀ । ଇଂରେଜମାନେ ଆଲମ୍‌ଙ୍କୁ ମୁକ୍ତ କରି ତାଙ୍କୁ ପୁନର୍ବାର ପେନସନ୍ ଦେଇ ରଖିଲେ । ଶା ଆଲମ୍ ତାଙ୍କ ମୃତ୍ୟୁକାଳ ପର୍ଯ୍ୟନ୍ତ ଇଂରେଜ ଆଶ୍ରୟରେ ତାଙ୍କ ପୂର୍ବ ରାଜପ୍ରାସାଦରେ ବାସ କରିବାକୁ ଲାଗିଲେ । ତାଙ୍କର ମରଣ ସଙ୍ଗେ ଭାରତର ମୋଗଲ ରାଜବଂଶ ଲୁପ୍ତ ହେଲା ।

—···(*)···—

## ଶିଖଜାତି

ନାନକ:—

ଯେତେବେଳେ ଭାରତର ଇସଲାମଧର୍ମର ପ୍ରଭାବ ଯୋଗେ ହିନ୍ଦୁ-ଧର୍ମର କିଛି ପରିବର୍ତ୍ତନ ଘଟିଲା, ସେତେବେଳେ ହିନ୍ଦୁଧର୍ମ ପ୍ରଚାରକମାନଙ୍କ ମଧ୍ୟରେ ପ୍ରଧାନ ଥିଲେ କବିର, ରାମାନନ୍ଦ, ଚୈତନ୍ୟ ପ୍ରମୁଖ ମହାତ୍ମା-ମାନେ । କବିରଙ୍କ ମତରେ ହିନ୍ଦୁ, ମୁସଲମାନ ଉଭୟ ଜାତିର ଲୋକେ ମିଶିଥିଲେ । କବିରଙ୍କ ଭାବରେ ଅନୁପ୍ରାଣିତ ହୋଇ ନାନକ ନାମକ ଜଣେ ପଞ୍ଜାବୀ କ୍ଷତ୍ରିୟ ଗୋଟିଏ ନୂତନ ଧର୍ମ ପ୍ରଚାର କଲେ । ଯେଉଁ ହିନ୍ଦୁମାନେ ନାନକଙ୍କ ମତରେ ଦୀକ୍ଷିତ ହେଲେ ସେମାନଙ୍କର ନାମ

ରହିଲା 'ଶିଷ୍ୟ' ବା 'ଶିଖ' । କ୍ରମେ ଶିଖମାନଙ୍କ ସଂଖ୍ୟା ବୃଦ୍ଧି ପାଇବାରୁ ଲାଗିଲା—ସେମାନେ ଏକ ସ୍ୱତନ୍ତ୍ର ଜାତି ହୋଇ ରହିଲେ ।

ନାନକ ବାବରଙ୍କ ସମୟର ଲୋକ । ସେ ୧୪୬୯ ସାଲରେ ଲାହୋର ନିକଟସ୍ଥ ନାଙ୍କଣା ଗ୍ରାମରେ ଜନ୍ମଗ୍ରହଣ କରି ୧୫୩୯ସାଲରେ ପ୍ରାଣତ୍ୟାଗ କରିଥିଲେ । ତାଙ୍କ ପିତା କାଲୁ ଜଣେ ବଡ଼ ବେପାରି ଥିଲେ । ତାଙ୍କର ଭାରି ଇଚ୍ଛା, ନାନକ ମଧ୍ୟ ଜଣେ ବେପାରି ହୁଅନ୍ତୁ; କିନ୍ତୁ ବାଲ୍ୟାବସ୍ଥାରୁହିଁ ନାନକଙ୍କ ମନର ଗତି ଅନ୍ୟ ଏକ ଦିଗରେ ଥିଲା । ସେ ସଂସାର ପ୍ରତି ଆସକ୍ତ ନ ଥିଲେ । ସେ କେବେ କେବେ ହିନ୍ଦୁ ସନ୍ନ୍ୟାସୀ କିମ୍ବା ପଠାଣ ଫକୀରମାନଙ୍କୁ ଘରକୁ ଡାକିଆଣି ସେମାନଙ୍କ ଠାରୁ ଧର୍ମଶିକ୍ଷା କରୁଥାନ୍ତି ।

୭ମ ବର୍ଷ ବୟସରେ ନାନକ ବିଦ୍ୟାଳୟରେ ଭର୍ତ୍ତି ହେଲେ । ସେ ସର୍ବଦା କୌଣସି ଏକ ନିର୍ଜନ ସ୍ଥାନରେ ବସି ଚିନ୍ତା କରୁଥିଲେ । ଧର୍ମପ୍ରବର୍ତ୍ତକ ମହାତ୍ମାମାନଙ୍କ ବାଲ୍ୟଜୀବନ ଏକ ଭାବରେହିଁ କଟିଗଲା । ମହମ୍ମଦ ଓ ବୁଦ୍ଧଦେବ ଏଭଳିହିଁ ପିଲାଦିନୁ ସାଂସାରିକ ବିଷୟ ବାସନା ତ୍ୟାଗ କରିଥିଲେ ।

କାଲୁ ନାନକଙ୍କର ମନ ବଦଳାଇଦେବା ଉଦ୍ଦେଶ୍ୟରେ ତାଙ୍କୁ ଗୋପାଳନ ଭାର ଦେଲେ । ତଥାପି ନାନକଙ୍କ ମନ ଧର୍ମ ଚିନ୍ତାରୁ ଫେରିଲା ନାହିଁ ।

ନାନକ ଯୌବନାବସ୍ଥାରେ ବହୁ ସ୍ଥାନକୁ ଯାଇ ବିଭିନ୍ନ ଧର୍ମ ବିଷୟ ଶିକ୍ଷା କଲେ । ସେ ଥରେ ପଠାଣମାନଙ୍କ ତୀର୍ଥସ୍ଥଳ ମକ୍କାକୁ ଯାଇଥିଲେ, ତାଙ୍କ ମନରେ ମହାତ୍ମା କବିରଙ୍କ ଭାବ ଖେଳିଲା । ସେ ହିନ୍ଦୁଧର୍ମ ଓ ଇସଲାମ୍‌ଧର୍ମର କେତେକାଂଶ ନେଇ ଶିଖମତ ଗଠନ କଲେ । ଅନେକେ ତାଙ୍କର ଶିଷ୍ୟତ୍ୱ ଗ୍ରହଣ କଲେ । ତାଙ୍କର ଏହି ଶିଷ୍ୟ ସମ୍ପ୍ରଦାୟହିଁ ଶିଖଜାତି ନାମରେ ପରିଚିତ ହେଲେ ।

ନାନକ ଶିଖଜାତିର ପ୍ରଥମ ଗୁରୁ—ତାଙ୍କ ପରେ ନ ଜଣ ଶିଖଗୁରୁ ହୋଇଥିଲେ । ଶିଖମାନେ ବଡ଼ ପରକ୍ରମନା, ଶାନ୍ତିପ୍ରିୟ । ସେମାନେ ପ୍ରଥମ କେତେଜଣ ମୋଗଲ ସମ୍ରାଟଙ୍କୁ କର ଦେଇ ସୁଖ ସନ୍ତୋଷରେ ଥିଲେ । ଶିଖମତ ପ୍ରତି ବାବର ଓ ଆକବରଙ୍କର ସହାନୁଭୂତି ଥିଲା । ଆକବରଙ୍କ ରାଜଭବନରେ କେତେଜଣ ଶିଖ ପଣ୍ଡିତ ନିଯୁକ୍ତ ହୋଇଥିଲେ । ଆକବର ଶିଖମାନଙ୍କୁ ପଞ୍ଜାବରେ ଗୋଟିଏ ସ୍ଥାନ ଦାନ କରିଥିଲେ । ଚତୁର୍ଥ ଶିଖଗୁରୁ ସେହି ଜାଗାରେ ଗୋଟିଏ ପୋଖରୀ ଖୋଳାଇ ତାହାର ନାମ ରଖିଲେ 'ଅମୃତସର' ଏହି ସ୍ଥାନ ଅସ୍ତେ ଅସ୍ତେ ବୃଦ୍ଧି ପାଇ ବର୍ତ୍ତମାନ ତାହା ପଞ୍ଜାବର ଗୋଟିଏ ପ୍ରକାଣ୍ଡ ସହର ହୋଇଅଛି । ଅମୃତସର ଶିଖମାନଙ୍କର ପ୍ରଧାନ ଏକ ତୀର୍ଥସ୍ଥଳ ।

ଶିଖଜାତିର ୫ମ ଗୁରୁ ଥିଲେ ଅର୍ଜୁନ । ସେ ଶିଖମାନଙ୍କର ପ୍ରଥମ ଧର୍ମଗ୍ରନ୍ଥ ପ୍ରଣୟନ କରିଥିଲେ—ତାହାର ନାମ 'ଆଦିଗ୍ରନ୍ଥ' । ଶିଖଜାତି ଏହି ଗ୍ରନ୍ଥକୁ ବେଦ ଭଳି ମାନି ଚଳିଥାନ୍ତି ।

ଅର୍ଜୁନଙ୍କ ପରେ ହରଗୋବିନ୍ଦ ଶିଖ ଗୁରୁ ପଦ ପାଇଲେ । ତାଙ୍କ ସମୟରେ ଶିଖ ଧର୍ମର ବହୁତ ପରିବର୍ତ୍ତନ ଘଟିଲା । ଜାହାଙ୍ଗୀର ଶିଖଜାତି ପ୍ରତି ନିଷ୍ଠୁର ଆଚରଣ କରିବାରୁ, ହରଗୋବିନ୍ଦ ନିଜ ଜାତିକୁ ଯୁଦ୍ଧଶିକ୍ଷା ଦେଇ ପଠାଣ ବିରୁଦ୍ଧରେ ଠିଆ କରାଇଲେ । ସେହି ସମୟଠାରୁ ଶିଖମାନେ ଏକ ଯୁଦ୍ଧପ୍ରିୟ ଜାତି ବୋଲି ପରିଚିତ ।

## ତେଜ ବାହାଦୁର—

ଔରଂଜେବ୍ ଶିଖମାନଙ୍କ ପ୍ରତି ବଡ଼ ଅତ୍ୟାଚାର କଲେ । ତାଙ୍କ ଆଦେଶରେ ପଠାଣମାନେ ଶିଖମାନଙ୍କୁ ଦେଖିବା ମାତ୍ରେ ବଧ କରୁ-

ଥାନ୍ତି । ଏପରି ଅନେକ ଶିଖ ପ୍ରାଣ ହରାଇଲେ । ଏଣୁ ଶିଖଜାତି ପଠାଣ ବିରୁଦ୍ଧରେ ଅଧିକ ଖଡ୍ଗହସ୍ତ ହୋଇ ଉଠିଲେ । ସେତେବେଳେ ତେଜ ବାହାଦୁର ଶିଖଜାତିର ନବମ ଗୁରୁ । ସେ ବାସ୍ତବିକ ତେଜସ୍ୱୀ ବୀର ପୁରୁଷ । ଔରଙ୍ଗଜେବ୍ ତାଙ୍କୁ ଇସଲାମ ଧର୍ମ ଗ୍ରହଣ କରିବା ପାଇଁ ବାଧ କରିବାରୁ ସେ ଭୀତତ୍ରସ୍ତ ନ ହୋଇ ଉତ୍ତର ଦେଲେ ଯେ, ସେ ପ୍ରାଣକୁ ଧର୍ମଠାରୁ ଅଧିକ ସୁଖ ପାନ୍ତି ନାହିଁ । ତାଙ୍କର ଅପୂର୍ବ ବୀରତ୍ୱ, ଅଦମ୍ୟ ଉତ୍ସାହ ଓ ସ୍ୱଧର୍ମାନୁରାଗ ଶିଖଜାତିକୁ ନବ ବଳ, ନବ ତେଜ ଦେଲା । କିନ୍ତୁ ଔରଙ୍ଗଜେବ୍‌ଙ୍କ ଦ୍ୱାରା ସେ ନିହତ ହେଲେ ।

## ଗୁରୁ ଗୋବିନ୍ଦ—

ତେଜ ବାହାଦୁରଙ୍କ ପରେ ତାଙ୍କ ପୁତ୍ର ଗୋବିନ୍ଦ ସିଂହ ଶିଖଗୁରୁ ପଦରେ ଅଧିଷ୍ଠିତ ହେଲେ । ସେ "ଗୁରୁଗୋବିନ୍ଦ" ନାମରେ ଖ୍ୟାତ । ସେ ପିତୃମରଣର ପ୍ରତିଶୋଧ ନେବାକୁ ବଦ୍ଧପରିକର ହେଲେ । ସେ ଶିଖମାନଙ୍କୁ ଉପଯୁକ୍ତ ଅସ୍ତ୍ର ଶସ୍ତ୍ର ଶିକ୍ଷା ଦେଇ ଗୋଟିଏ ବିଶାଳ ସମର-ପ୍ରିୟ ସମ୍ପ୍ରଦାୟ ଗଢିଲେ । ଏହି ଦଳର ନାମ ହେଲା 'ଖାଲସା' । ଔରଙ୍ଗଜେବ୍‌ଙ୍କ ମୃତ୍ୟୁ ପରେ ଶିଖମାନେ ଉତ୍ତର-ଭାରତରେ ଭାରି ପ୍ରତାପ-ଶାଳୀ ଓ ଶକ୍ତି ଯୋଦ୍ଧାଜାତି ହୋଇ ଉଠିଲେ । ବର୍ତ୍ତମାନ ସୁଦ୍ଧା ସେମାନେ ଭାରତର ଏକ ବୀର, ସମରପ୍ରିୟ ଜାତି । ଗତ ଜର୍ମାନ ଯୁଦ୍ଧରେ ଶିଖ ସୈନ୍ୟ ଅଣ ସରକାରଙ୍କୁ ବିଶେଷ ସାହାଯ୍ୟ କରିଥିଲେ । ଖାଲ୍‌ସାରେ ଯେଉଁମାନେ ମିଶନ୍ତି, ସେମାନେ ମାଦକଦ୍ରବ୍ୟ ସେବନ କରନ୍ତି ନାହିଁ । ପ୍ରାୟ ପ୍ରତ୍ୟେକ ଶିଖ ଅଛି କାଲି ସୁଦ୍ଧା ପ୍ରତି ମୁହୂର୍ତ୍ତ ପାଖରେ ଖଣ୍ଡିଏ ଖଣ୍ଡିଏ କୃପାଣ ବା କଟାରି ରଖିଥାନ୍ତି । ଏହା ବୀରତ୍ୱର ଚିହ୍ନ ।

ଅହମ୍ମଦ ସା ଦୁରାନି ପଞ୍ଜାବରୁ ବାହାରିବାର କେତେକ ବର୍ଷ ପରେ ଶିଖମାନେ ପଞ୍ଜାବରେ ସେମାନଙ୍କର ରାଜ୍ୟ ଗଠନ କଲେ । ଗୁରୁଗୋବିନ୍ଦଙ୍କ ମୃତ୍ୟୁ ପରେ ବିଭିନ୍ନ ଶିଖ ସର୍ଦ୍ଦାର ଭିନ୍ନ ଭିନ୍ନ ଶିଖରାଜ୍ୟ ଶାସନ କରିବାକୁ ଲାଗିଲେ । ପରେ ରଣଜିତ୍ ସିଂହ ନାମକ ଜଣେ ପ୍ରତାପାନ୍ୱିତ ଶିଖ ସର୍ଦ୍ଦାର ଅନ୍ୟାନ୍ୟ ସର୍ଦ୍ଦାରମାନଙ୍କୁ ଅପସୃତ ଓ ଏକତ୍ରିତ କରି ସମଗ୍ର ପଞ୍ଜାବ ଓ କାଶ୍ମୀରରେ ତାଙ୍କର ନିରଙ୍କୁଶ ଆଧିପତ୍ୟ ଚଳାଇଲେ ।



## ବାଣିଜ୍ୟପଥ

ଅତି ପ୍ରାଚୀନ ଯୁଗରେ ଆମ ଦେଶ ଇଉରୋପଠାରୁ ବିଚ୍ଛିନ୍ନ ଥିଲା । କିନ୍ତୁ ପୋର୍ତ୍ତୁଗୀଜ, ଓଲନ୍ଦାଜ, ଫରାସୀ ଓ ଇଂରେଜଜାତି ସକଳର ବାଣିଜ୍ୟ ଯୋଗେ କ୍ରମେ ସେହି ବିଚ୍ଛିନ୍ନତା ଦୂରହେଲା—ବର୍ତ୍ତମାନ ନିକଟ ସମ୍ବନ୍ଧ ସ୍ଥାପିତ ହୋଇଅଛି । ସମୁଦ୍ର ଏହି ଏକତା ବା ସମ୍ବନ୍ଧର ଗୋଟିଏ ପ୍ରଧାନ ବନ୍ଧନ । ଆଜିକାଲି ଯେଉଁ ଦେଶର ବେଶି ଜାହାଜ ଅଛି, ତାହା ଦୂରବର୍ତ୍ତୀ ଦେଶ, ମହାଦେଶ ସହିତ ସମ୍ବନ୍ଧ । ବର୍ତ୍ତମାନ ପ୍ରାୟ ସକଳ ସମୁଦ୍ରବାଣିଜ୍ୟ-ମାର୍ଗ ଇଂରେଜ ସରକାରଙ୍କ ଅଧୀନରେ । ଏଣୁ ଭାରତ ପର୍ବତଯୋଗୁଁ ରୁସିଆ, ପାରସ୍ୟ, ଚିନ୍ ଇତ୍ୟାଦି ରାଜ୍ୟରୁ ପୃଥକ୍ ହେଲେହେଁ କେବଳ ସମୁଦ୍ର ଯୋଗେ ସୁଦୂର ବ୍ରିଟିଶ୍ ଦ୍ୱୀପପୁଞ୍ଜ ସଙ୍ଗେ ତାହାର ଖୁବ୍ ନିକଟ ସମ୍ବନ୍ଧ ରହିପାରିଛି । ସମୁଦ୍ର ଉପରେ ଯାହାର ସ୍ୱାଧୀନ କାରବାର, ଅଧିକାର ଅଧିକ, ସେ ସାରା ପୃଥିବୀର ଅଧିକାରୀ କହିଲେ ଚଳେ ।

ପୋର୍ତ୍ତୁଗୀଜ୍ ଜାତି ଆମଦେଶକୁ ଆସିବାର ବହୁତ ଦିନ ଆଗେ ଭାରତ-ଇଉରୋପ ବାଣିଜ୍ୟ ପ୍ରଧାନତଃ ଉପରୋକ୍ତ ମାର୍ଗରେ ଚାଲୁଥିଲା; ଏହି କଥା ଏଥିପୂର୍ବେ ପଢ଼ି ଜାଣିଛ ।

ବହୁକାଳଯାଏଁ ଭାରତର ପୂର୍ବ କଥିତ ଉକ୍ତ ମାର୍ଗରେ ବାଣିଜ୍ୟ ସୁନ୍ଦର ଚାଲିଲା । କିନ୍ତୁ ତୁରସ୍କ ଜାତି (Turks) ପ୍ରାୟ ସମସ୍ତ ପଶ୍ଚିମ-ଆସିଆ ଜୟ କରିବାମାତ୍ରେ ଏହି ବାଣିଜ୍ୟରେ ବିସ୍ତର ବାଧାବିଘ୍ନ ଘଟିଲା । ଏହି ବିଘ୍ନର ପ୍ରଧାନ କାରଣ ଥିଲା ମୁସଲମାନ-ଖ୍ରୀଷ୍ଟୀୟାନ-ବିରୋଧ । ପ୍ରାୟ ଏକ ଶତାବ୍ଦୀ କାଳ ଏହି ବାଣିଜ୍ୟ ଏକାବେଳକେ ବନ୍ଦ ହୋଇଗଲା ।

ପଞ୍ଚଦଶ ଶତାବ୍ଦୀର ଶେଷ ଭାଗରେ, ଇଉରୋପର ଖ୍ରୀଷ୍ଟୀୟାନ ବେପାରୀମାନେ ଭାରତକୁ ଆସିବା ପାଇଁ ନୂତନ ଏକମାର୍ଗ ଆବିଷ୍କାର କରିବାକୁ ଲାଗିଲେ । ଏହି ନୂତନ ପଥଟି ତୁରସ୍କମାନଙ୍କ ଅଧୀନରେ ନ ଥିଲା । ଏହା ଜଳ ମାର୍ଗ । ଏହି ମାର୍ଗଟି ପୋର୍ତ୍ତୁଗୀଜ୍ ଦେଶର ଲୋକଙ୍କ ଦ୍ୱାରା ଆବିଷ୍କୃତ ହୋଇଥିବା ବିଷୟ ମଧ୍ୟ ପୂର୍ବେ ବୋଲା ଯାଇଛି ।

ପରେ ପୋର୍ତ୍ତୁଗୀଜ୍ ଜାତିର ଦେଖାଶିଖା ଇଂରେଜ, ଓଲନ୍ଦାଜ, ଫରାସିମାନେ ଆଶା ଅନ୍ତରୀପ ବାଟେ ଆସି ଭାରତରେ ବାଣିଜ୍ୟ ଆରମ୍ଭ କଲେ । ଏକଥା ଆଗେ କୁହା ଯାଇଛି ।

ଆଧୁନିକ ବାଣିଜ୍ୟମାର୍ଗ ସମ୍ବନ୍ଧରେ ଏଠାରେ କିଛି କୁହାଯିବ । ୧୮୬୯ ସାଲରେ, ଲୋହିତ ସାଗର ଓ ଭୂମଧ୍ୟ ସାଗର ମଧ୍ୟରେ ସୁଏଜ କେନାଲ ଖୋଲା ହେଲା । ସେହି ସମୟଠାରୁ ଜାହାଜ ସବୁ ଏହି କେନାଲ ବାଟେ ଯା ଆସ କରେ । ବର୍ତ୍ତମାନ ଜାହାଜ ସବୁ ଆମ ଦେଶର ବୋମ୍ବାଇ ଠାରୁ ବାହାରି, ଆରବ ସାଗର ଓ ଲୋହିତ ସାଗର ପାର ହୋଇ ସୁଏଜ୍ କେନାଲ ବାଟେ ଭୂମଧ୍ୟ ସାଗରକୁ ଯାଏ; ପରେ

ଭୂମଧ୍ୟ ସାଗର ଉତ୍ତୀର୍ଣ୍ଣ ହୋଇ ମାର୍‌ସେଲ୍‌ସ୍ ବମ୍ବା ଲଣ୍ଡନକୁ ଯାଏ । ଲଣ୍ଡନକୁ ଯିବା ଜାହାଜ ମାରସେଲ୍‌ସ୍‌ଠାରୁ ବାହାର ଜିବ୍ରାଲ୍‌ଟର୍ ବାଟେ ପୋର୍ଟୁଗାଲ୍ ଦେଶ ପାର୍ଶ୍ୱରେ ଇଙ୍ଗ୍ଲିସ୍ ଚ୍ୟାନେଲ୍‌ରେ ଯାଇ ପ୍ରବେଶ କରେ । କେତେକ ଯାତ୍ରୀ ମାର୍‌ସେଲ୍‌ସ୍ ଠାରୁ ଜାହାଜରୁ ଓହ୍ଲାଇ ରେଲରେ ଫ୍ରାନ୍ସଦେଶ ମଧ୍ୟ ଦେଇ କାଲେଇ ବନ୍ଦର ଠାରେ ପହଞ୍ଚନ୍ତି । ପରେ ସେଠାରେ ଜାହାଜରେ ବସି ଡୋଭର ପ୍ରଣାଳୀ ପାର ହୋଇ ଇଂଲଣ୍ଡର ଡୋଭର ବନ୍ଦରରେ ଓହ୍ଲାନ୍ତି; ଏବଂ ସେହି ସ୍ଥାନରୁ ରେଲ-ମାର୍ଗରେ ଲଣ୍ଡନକୁ ବମ୍ବା ଇଂଲଣ୍ଡର ଅନ୍ୟାନ୍ୟ ନଗରକୁ ଯାନ୍ତି ।

ସୁଏଜ୍ କେନାଲର ଦକ୍ଷିଣ ପ୍ରାନ୍ତରେ ସୁଏଜ୍ ନଗର ଅବସ୍ଥିତ । ପ୍ରାଚୀନ କାଳରେ ବଣିକ ବା ଯାତ୍ରିଦଳ ଓଟ ପିଠିରେ ଜିନିସ ପତ୍ର ଲଦି ଆଲେକ୍‌ଜାଣ୍ଡ୍ରିୟା ନଗର ଓ ସୁଏଜ୍ ସହର ମଧ୍ୟରେ ଯିବା ଆସିବା କରୁଥିଲେ । ପରେ କେଇରୋ ଓ ଆଲେକ୍‌ଜାଣ୍ଡ୍ରିୟା ସହିତ ସୁଏଜ୍ ରେଲମାର୍ଗ ଦ୍ୱାରା ସଂଯୁକ୍ତ କରାଗଲା । ମିଶର ( Egypt ) ଦେଶକୁ ଯିବା ଯାତ୍ରିମାନେ ସାଧାରଣତଃ ସୁଏଜ୍ ବନ୍ଦରରେ ଓହ୍ଲାଉଥାନ୍ତି । ସୁଏଜ୍ କେନାଲ ଖୋଲା ହେବା ପୂର୍ବେ, ଯାତ୍ରିମାନଙ୍କୁ ସୁଏଜ୍ ବନ୍ଦରରେ ଜାହାଜରୁ ଓହ୍ଲାଇ, ରେଲ ମାର୍ଗରେ ଆଲେକ୍‌ଜାଣ୍ଡ୍ରିୟାକୁ ଯିବାକୁ ହେଉ ଥିଲା । ଏବଂ ଆଲେକ୍‌ଜାଣ୍ଡ୍ରିୟା ବନ୍ଦରରେ ଜାହାଜ ଚଢ଼ି ମାର୍‌ସେଲ୍‌ସ୍ ବମ୍ବା ଲଣ୍ଡନକୁ ଯିବାକୁ ହେଉଥିଲା । ଏହି ଯାତ୍ରାରେ ବେଶି ଅସୁବିଧା ଘଟୁଥିଲା ଏବଂ ଅଧିକ ସମୟ ଲାଗୁଥିଲା । ଏହି ଅସୁବିଧା ଦୂର କରିବା ଉଦ୍ଦେଶ୍ୟରେ, ବ୍ରିଟିଶ୍ ସରକାର ପ୍ରାୟ ୬୦ କୋଟି ଟଙ୍କା ଖର୍ଚ୍ଚ କରି ସୁଏଜ୍ କେନାଲ ଖୋଲାଇଲେ । ଫେର୍ଡିନାଣ୍ଡ ଡ଼ି ଲେସେପ୍ସ୍ ନାମକ ଜଣେ ଫରାସୀ ବ୍ୟକ୍ତି ଏହି କାମରେ ଇଂଜିନିଅର ନିଯୁକ୍ତ ହୋଇଥିଲେ ।

ସୁଏଜ୍ କେନାଲଟି ପ୍ରାୟ ଶହେ ମାଇଲ ଦୀର୍ଘ । ପ୍ରଥମ କେତେକ ବର୍ଷ ସୁଏଜ୍ କେନାଲରେ କେବଳ ଦିନବେଳେ ଯିବାକୁ ଦେଉଥିଲା ଏବଂ କେନାଲର ଗୋଟିଏ ପ୍ରାନ୍ତରୁ ଅପର ପ୍ରାନ୍ତକୁ ଯାତ୍ରା କରିବା ପାଇଁ ୩୬ ଘଣ୍ଟା କାଳ ଲାଗୁଥିଲା । କିନ୍ତୁ ଆଧୁନିକ ଯୁଗର ଜାହାଜ ସବୁ ଶକ୍ତିଶାଳୀ ବିଦ୍ୟୁତ ଆଲୋକରେ ( Electric search lights ) ପୂର୍ଣ୍ଣ ଏଣୁ ଆଜକାଲି ଏହି କେନାଲରେ ଦିବସରେ ଓ ରାତ୍ରିବେଳେ ଯାତାୟାତ କରିବାର ବେଶ୍ ସୁବିଧା ହୋଇଅଛି । କେନାଲର ଉତ୍ତର ପ୍ରାନ୍ତରେ ସେଡ୍‌ବନ୍ଦର (Port Said) ଅବସ୍ଥିତ । ଆଜି କାଲି ସୁଏଜ୍‌ଠାରୁ ସେଡ୍‌ବନ୍ଦରକୁ ଜଳଯାତ୍ରା କରିବାରେ ୧୪ କିମ୍ବା ୧୬ଘଣ୍ଟା ମାତ୍ର ଲାଗେ । ଏହି କେନାଲ ଯୋଗୁଁ ବର୍ତ୍ତମାନ ଇଉରୋପ ଓ ଭାରତ ମଧ୍ୟରେ ବିସ୍ତୃତ ବାଣିଜ୍ୟ ଚଳେ । ଆଜି କାଲି ଏହାହିଁ ଭାରତ-ଇଉରୋପ-ବାଣିଜ୍ୟର ପ୍ରଧାନ ମାର୍ଗ ହୋଇଅଛି ।

—ः(୦)ः—

# ଭାରତରେ ଇଉରୋପୀୟ ଉପନିବେଶ ଓ ପୂର୍ବବର୍ତ୍ତୀ ବିଜେତାଗଣ

ତୁମେମାନେ ଜାଣ ଯେ, ପ୍ରଥମରେ ଆର୍ଯ୍ୟଜାତି ମଧ୍ୟଏସିଆରୁ ଆସି ଭାରତ ଅଧିକାର କଲେ । ବହୁ କାଳ ଯାଏଁ ଆର୍ଯ୍ୟ ବା ହିନ୍ଦୁ ରାଜାମାନେ ଶାସନ କରିବା ପରେ, ଭାରତ କ୍ରମେ ପଠାଣ ଓ ମୋଗଲ-ମାନଙ୍କ ଦ୍ୱାରା ଅଧିକୃତ ହେଲା । ମୋଗଲ ସାମ୍ରାଜ୍ୟର ପତନ ସଙ୍ଗେ ସଙ୍ଗେ ଇଂରେଜ ଜାତି ଆମ ଦେଶର ଶାସକ ହେଲେ ଏବଂ ସେହି ସମୟାବଧି ଆଜି ପର୍ଯ୍ୟନ୍ତ ଭାରତରେ ବିଟ୍ରିଶ୍‌ଶାସନ କ୍ରମାଗତ ଚାଲି ଆସିଛି ।

ପ୍ରଥମରେ ଇଂରେଜମାନେ ବାଣିଜ୍ୟ ପାଇଁ ଭାରତକୁ ଆସିବା ବେଳେ ଏବଂ ତା'ଆଗରୁ ଇଉରୋପର ଅନ୍ୟ କେତେକ ଜାତି ମଧ୍ଯ କେତେକ କାଳ ଏଠାରେ ବାଣିଜ୍ୟ ଓ ଉପନିବେଶ ସ୍ଥାପନ କରିଥିଲେ। ସେମାନଙ୍କ ମଧ୍ଯରୁ ପୋର୍ତ୍ତୁଗୀଜ୍, ଓଲନ୍ଦାଜ ଓ ଫରାସୀ ଜାତିମାନଙ୍କର ନାମ ବିଶେଷ ଉଲ୍ଲେଖଯୋଗ୍ୟ। ଏହି ସମସ୍ତ ଇଉରୋପୀୟ ଜାତିର ଭାରତ-ବିଜୟ ଓ ଉପନିବେଶ ସ୍ଥାପନ ସହିତ ପଠାଣ ମୋଗଲଗଣଙ୍କ ଆକ୍ରମଣ ଓ ଅଧିକାର ଏଠାରେ ତୁଳନା କରାଯିବ।

ପଠାଣ ଓ ମୋଗଲମାନେ କେବଳ ଜୟଲାଭ ଉଦ୍ଦେଶ୍ୟରେ ଉତ୍ତର ଦିଗରୁ ଭାରତ ଆକ୍ରମଣ କରିଥିଲେ। ସେମାନେ ଭାରତର ଉତ୍ତର-ପଶ୍ଚିମ କୋଣରେ ପାର୍ବତ୍ୟ ପ୍ରଦେଶ ଆଡୁ ଆକ୍ରମଣ ଆରମ୍ଭ କରି, ପରେ କ୍ରମେ ସମୁଦ୍ର ପ୍ରତି ଅର୍ଥାତ୍ ଦକ୍ଷିଣ ଦିଗରେ ଅଗ୍ରସର ହେଲେ। କିନ୍ତୁ ଇଉରୋପୀୟ ଜାତି ସକଳ ପ୍ରଥମରେ ଏ ଦେଶକୁ ଆସିବା ବେଳେ, ସେମାନଙ୍କ ମନରେ ଭାରତ-ବିଜୟେଚ୍ଛା ତେତେ ପ୍ରବଳ ନ ଥିଲା। ଭାରତ-ବାଣିଜ୍ୟରେ ଲାଭବାନ୍ ହେବା ସକାଶେହିଁ ସେମାନଙ୍କର ପୂର୍ଣ୍ଣ ଆଶା ଓ ପ୍ରଗାଢ଼ ଉଦ୍ୟମ ଥିଲା। କ୍ରମେ ବାଣିଜ୍ୟରେ ଲାଭବାନ୍ ହେବା ସଙ୍ଗେ ସଙ୍ଗେ, ସେମାନେ ଭାରତ-ଅଧିକାର-ଲୋଭ ସମ୍ବରଣ କରି ପାରିଲେ ନାହିଁ। ସେମାନେ ଆଗେ ଭାରତର ଦକ୍ଷିଣ ଓ ପଶ୍ଚିମ ଉପକୂଳରେ ଆସି ପହଞ୍ଚିଲେ। ପଠାଣ ଓ ମୋଗଲମାନଙ୍କ ଭାରତ-ପ୍ରବେଶ-ପ୍ରଣାଳୀଠାରୁ ଇଉରୋପୀୟ ଜାତିମାନଙ୍କର ପ୍ରଣାଳୀ ସମ୍ପୂର୍ଣ୍ଣ ଭିନ୍ନ। ଇଂରେଜ ଜାତି ଆଗେ ସମୁଦ୍ର ଆଡ଼ୁ ଭାରତରେ ପ୍ରବେଶ କରି ପରେ କ୍ରମେ ଉତ୍ତରାଭିମୁଖୀ ହୋଇ ପର୍ବତ ଆଡ଼େ ଚାଲିବାକୁ ଲାଗିଲେ। ଇଉରୋପୀୟଗଣଙ୍କର ପ୍ରଧାନତଃ ଜାହାଜବଳ ଥିବାରୁ, ସେମାନେ ସାଗର-ମାର୍ଗ ଅନୁସରଣ କରିଥିଲେ। କିନ୍ତୁ ପଠାଣ କିମ୍ବା ମୋଗଲ ଜାତିର ଏପରି କିଛି ନ ଥିଲା।

ଅନେକ ଦିନ ହେଲା ରୁଷିଆ ସ୍ଥଳପଥରେ ଯୁଦ୍ଧଯାତ୍ରାଯୋଗେ ସମଗ୍ର ଏସିଆ ଜୟ କରିବା ପାଇଁ ବରାବର ଚେଷ୍ଟା କରି ଆସୁଛି, କିନ୍ତୁ ଆଜଯାଏଁ ସଫଳକାମ ହୋଇ ପାରି ନାହିଁ ଏବଂ ଭବିଷ୍ୟତରେ କେବେ ହେବାର ବି ଆଶା ନାହିଁ। କିନ୍ତୁ ପ୍ରବଳ ଉନ୍ନତ ଇଂରେଜ ଜାତି ସେମାନଙ୍କର ଜାହାଜ ଓ ସମୁଦ୍ରମାର୍ଗ ସାହାଯ୍ୟରେ ଜଳପଥରେ ନିର୍ବିଘ୍ନରେ ଅତି ଶୀଘ୍ର ଦକ୍ଷିଣ ଏସିଆରେ ଆସି ପହଞ୍ଚି ପାରିଲେ।

ମୋଗଲମାନେ ଭାରତ ଜୟ କରିବା ଉଦ୍ଦେଶ୍ୟରେ ଆସିଲେ, ବାହୁବଳରେ ସେମାନଙ୍କ ଉଦ୍ଦେଶ୍ୟ ସଫଳ ହେଲା, ସେମାନେ ଏଠାରେ ବିଶାଳ ସାମ୍ରାଜ୍ୟ ଗଢ଼ିଲେ ଏବଂ ଭାରତର ସର୍ବତ୍ର ମୋଗଲ-ପ୍ରଭୁତ୍ୱ ଅବାଧରେ ଚଳିଲା। କିନ୍ତୁ ସେମାନଙ୍କର ଶକ୍ତି, ରାଜତ୍ୱ ଅଳ୍ପକାଳ ସ୍ଥାୟୀ ମାତ୍ର ହେଲା—ବେଶି ଦିନ ଶାସନ ଚଳାଇ ପାରିଲେ ନାହିଁ। ଶେଷରେ ମୋଗଲ-ଅଧିକାର ଧ୍ୱଂସ ପାଇଲା। ସେମାନେ ପ୍ରଥମରେ ଭାରତ ଜିଣି ଭାରତବାସୀମାନଙ୍କୁ ନିଜକୁ ଅଧୀନରେ ଆଣିଥିଲେ। କିନ୍ତୁ ପରିଶେଷରେ ଘଟିଲା କଣ ? ସେମାନେ ନିଜେ ପରାସ୍ତ, ଲାଞ୍ଛିତ ହୋଇ ପଡ଼ିଲେ।

ଇଉରୋପୀୟ ଜାତି ସକଳ ପ୍ରଥମରେ ସାମାନ୍ୟ ବେପାରୀ ଭଳି ଭାରତକୁ ଆସିଲେ; ପରେ କ୍ରମେ ସୁଦୃଢ଼ ଉପନିବେଶ ସାମ୍ରାଜ୍ୟର ଭିତ୍ତି ସ୍ଥାପନ କରିବାକୁ ଲାଗିଲେ। ପୋର୍ତ୍ତୁଗୀଜ, ଓଲନ୍ଦାଜ ଓ ଫରାସୀମାନେ ଭାରତରେ ଅଳ୍ପକାଳ ମାତ୍ର ନିଜ ନିଜର ଅଧିକାର ଚଳାଇଲେ, ପରେ ସେମାନଙ୍କର ପ୍ରଭାବ ଏଠାରେ ଏକାବେଳକେ ଲୁପ୍ତ ହେଲା। ଶେଷରେ ରହିଲେ ବିଜୟୀ ଇଂରେଜ ଜାତି। ଇଂରେଜମାନେ ବୁଦ୍ଧିବଳରେ କ୍ରମେ ବାଣିଜ୍ୟରୁ ସିଂହାସନକୁ ଉଠି ପାରିଲେ—ସେମାନେ ଏଠାରେ ଗୋଟିଏ ପ୍ରକାଣ୍ଡ, ସ୍ଥାୟୀ ସାମ୍ରାଜ୍ୟ ଗଠନ କଲେ। ବର୍ତ୍ତମାନେ ସମସ୍ତ ଭାରତବର୍ଷ

ଇଂରେଜସରକାରଙ୍କର ଅଧୀନରେ । ମୋଗଲମାନେ ପ୍ରଥମରେ ବିଜେତା ଥିଲେ, ଶେଷରେ ଭାରତରେ ସେମାନଙ୍କର ପୂର୍ଣ୍ଣ ପତନ ହେଲା । କିନ୍ତୁ ଇଂରେଜମାନେ ସାମାନ୍ୟ ବେପାରି ଥିଲେ, ଆଜିକାଲି ସେମାନେ ଆମ ଦେଶର ଏକଛତ୍ର ସମ୍ରାଟ, ନିରଙ୍କୁଶ ଶାସକ ।

ଭାରତ ଆକ୍ରମଣ କରିବାବେଳେ ଏବଂ ଅଧିକାର କରିବା ପରେ ପଠାଣମାନେ ଭାରତବାସିଙ୍କୁ ଭୟଙ୍କର ପୀଡ଼ା ଦେଇଥିଲେ, ବିଶେଷତଃ ହିନ୍ଦୁଜାତି ଓ ହିନ୍ଦୁଧର୍ମ ପ୍ରତି ଘୋର ଅନ୍ୟାୟ, ଅତ୍ୟାଚାର କରିଥିଲେ । କିନ୍ତୁ ଇଂରେଜମାନେ ଏଠାକୁ ଆସିବା ସମୟରେ ଦେଶବାସିଙ୍କ ପ୍ରତି ପଠାଣ ପରି ନିଷ୍ଠୁରାଚରଣ କରି ନ ଥିଲେ ।



ସ ମା ପ୍ତ

Printed by D. Rath at the Store Press, Berhampur

# ବାଳକ ବିନୋଦ ଗ୍ରନ୍ଥମାଳା

| | | | |
|---|---|---|---|
| ୧ | ନୃଗାପଲୀଳା | ଶ୍ରୀ ଦାମୋଦର ମିଶ୍ର | ଟ |
| ୨ | ପୁରାଣ କଥା ୧ମ ଭାଗ | ଜନୈକ ଶିକ୍ଷକ | ଟ |
| ୩ | ମାର୍କଣ୍ଡେୟ | ଶ୍ରୀ ରାମଚନ୍ଦ୍ର ଆଚାର୍ଯ୍ୟ ବି. ଏ. | ଟ |
| ୪ | ପୁରାଣ କଥା ୨ୟ ଭାଗ | ଜନୈକ ଶିକ୍ଷକ | ଟ |
| ୫ | ସୀତା ଦେବୀ | ଶ୍ରୀ ଜଗନ୍ନାଥ ମହାପାତ୍ର | ଟ |
| ୬ | ଛନ୍ଦି ରାମାୟଣ | ଶ୍ରୀ ଦାମୋଦର ମିଶ୍ର | ଟ |
| ୭ | ତୁଚ୍ଛ ମହାଭାରତ | ଶ୍ରୀ ଗୋଦାବରୀଶ ମହାପାତ୍ର | ଟ |
| ୮ | ବାଳବୀର ଅଭିମନ୍ୟୁ | ପଣ୍ଡିତ ଶ୍ରୀ ଲିଙ୍ଗରାଜ ମିଶ୍ର ଶାସ୍ତ୍ରୀ | ଟ |
| ୯ | ବିଶ୍ୱାମିତ୍ର | ଶ୍ରୀ ବାସୁଦେବ ମହାପାତ୍ର | ଟ |
| ୧୦ | କର୍ଣ୍ଣ | ,, | ଟ |
| ୧୧ | ଓଡ଼ିଶାର ଇତିହାସ-କଥା | ଶ୍ରୀ ଉଦୟନାଥ ଷଡ଼ଙ୍ଗୀ | ଟ |
| ୧୨ | ଧ୍ରୁବ | ଶ୍ରୀ ଦୟାନିଧି ମିଶ୍ର ବି.ଏ. ଏଲ୍. ଟି. | ଟ |
| ୧୩ | ପୁରାଣକଥା-ଲହରୀ (୧ମ ତରଙ୍ଗ) | ଶ୍ରୀ ଗଙ୍ଗାଧର ମହାପାତ୍ର | ଟ |
| ୧୪ | ଯୁଧିଷ୍ଠିର | ଶ୍ରୀ ନୀଳକଣ୍ଠ ଦାଶ | ଟ |
| ୧୫ | କୁନ୍ତୀ | ଶ୍ରୀ ଜଗନ୍ନାଥ ମହାପାତ୍ର | ଟ |
| ୧୬ | ପ୍ରୀତିଗଳ୍ପ | ଶ୍ରୀ ପୀତାମ୍ବର କର, ବି. ଏ. ଏଲ୍. ଟି. | ଟ |
| ୧୭ | ଭରତ | ଶ୍ରୀ ନୀଳକଣ୍ଠ ଦାଶ | ଟ |
| ୧୮ | ଅନସୂୟା | ଶ୍ରୀ ରାମଚନ୍ଦ୍ର ଆଚାର୍ଯ୍ୟ ବି. ଏ | ଟ |
| ୧୯ | ହରିଶ୍ଚନ୍ଦ୍ର | ଶ୍ରୀ ଦାମୋଦର ମିଶ୍ର | ଟ |
| ୨୦ | ପୁରାଣକଥା ୩ୟ ଭାଗ | ଜନୈକ ଶିକ୍ଷକ | ଟ |
| ୨୧ | ରଘୁ | ଶ୍ରୀ ଶିବପ୍ରସାଦ ଦାଶ | ଟ |
| ୨୨ | ସରଳ ରଘୁବଂଶ | ,, ,, | ଟ |
| ୨୩ | ବୁଦ୍ଧ | ,, ,, | ଟ |
| ୨୪ | ହିତୋପଦେଶ-କଥା | ଜନୈକ ଶିକ୍ଷକ | ଟ |
| ୨୫ | ଭାରତର ଇତିହାସ କଥା— | ଶ୍ରୀ ଉଦୟନାଥ ଷଡ଼ଙ୍ଗୀ | ଟ |
| ୨୬ | ଚନ୍ଦ୍ରହାସ | ଶ୍ରୀ ବାଞ୍ଛାନିଧି ପଟ୍ଟନାୟକ | ଟ |
| ୨୭ | କବିତାବଳୀ ୧ମ ଖଣ୍ଡ | ଶ୍ରୀ ନୀଳକଣ୍ଠ ଦାଶ | ଟ |